**ବିସ୍ମୟ ବିଶ୍ୱ** ॥ ଲେଖକ : ଲିଙ୍ଗରାଜ ମହାନ୍ତି ॥ ପ୍ରକାଶକ : ଅଗ୍ରଦୂତ, ବାଙ୍କାବଜାର, କଟକ - ୭୫୩ ୦୦୨ ॥ ପ୍ରଥମ ପ୍ରକାଶ : ୧୯୯୭ ॥ ଦ୍ୱିତୀୟ ପ୍ରକାଶ : ୨୦୦୦ ॥ ପ୍ରଚ୍ଛଦ : ମାନସ ଜେନା ॥ ଅକ୍ଷର ସଜ୍ଜା : ଏମ୍ ପ୍ରିଣ୍ଟର୍ସ, ବିଜେବି ନଗର, ଭୁବନେଶ୍ୱର ॥ ମୁଦ୍ରଣ : ସାଥୀ ଅଫ୍‌ସେଟ୍, ଓଡ଼ିଆ ବଜାର, କଟକ ॥ **ମୂଲ୍ୟ : ଚାଳିଶ ଟଙ୍କା**

**BISMAYA BISWA** II Written by : Lingaraj Mohanty II 1st Edition : 1997 II 2nd Edition : 2000 II DTP : AIM Printers, BJB Nagar, Bhubaneswar II Published by : Agraduta, Bankabazar, Cuttack - 753 002 II

**Price : Rs. 40/-**

ISBN 81-86354-52-2

## ।। ସୂଚୀ ।।





# ବରମୁଡ଼ା ତ୍ରିଭୂଜ

*ସତରେ, ସତରେ କ'ଣ ଆଟ୍‌ଲାଣ୍ଟିକ୍ ମହାସାଗରର ବରମୁଡ଼ା ଅଞ୍ଚଳ ଅନ୍ୟଗ୍ରହର ହତ୍ୟାକେନ୍ଦ୍ର ! ନା ପୃଥିବୀର ସର୍ବାଧିକ ମାଧ୍ୟାକର୍ଷଣ ଶକ୍ତି ଏଇଠି ହୋଇଛି ଠୁଳ !*

*ତେବେ ସେ ଯାହା ହେଉ ଏଇଠି ନିଖୋଜ ହୋଇଛି ଶହ ଶହ ଜାହାଜ ଓ ଉଡ଼ାଜାହାଜ.. ନିଖୋଜ ହୋଇଛନ୍ତି ସହସ୍ର ସହସ୍ର ନାବିକ ଓ ଗବେଷକ ! ଯାହାରି ସନ୍ଧାନ ମିଳିନି ଏ ଯାବତ୍ !*

*ଏହି ରହସ୍ୟମୟ ଅଞ୍ଚଳକୁ କେନ୍ଦ୍ର କରି ରଚିତ ହୋଇଛି କେଜାଣି କେତେ ଯେ ପୁସ୍ତକ ! ସେଇ ରହସ୍ୟର ଉନ୍ମୋଚନ ପାଇଁ ଋଷିଆ ଓ ଆମେରିକା ଏ ଅବଧି ଚାଲୁ ରଖିଛନ୍ତି ନାନା ପରୀକ୍ଷା ନିରୀକ୍ଷା । ଗବେଷଣାରେ ଲିପ୍ତ ଅଛନ୍ତି ଦୁଇ ଦେଶର ବୈଜ୍ଞାନିକ । ସେଇ ରହସ୍ୟମୟ ତ୍ରିଭୁଜାକାର ଅଞ୍ଚଳ ସମ୍ପର୍କରେ......*

ଆବାହମାନ କାଳରୁ ମଣିଷ ଖୋଜି ଚାଲିଛି । ଭୂପୃଷ୍ଠରୁ ଚନ୍ଦ୍ରପୃଷ୍ଠ । ସୁଉଚ୍ଚ ପାହାଡ଼ରୁ ସାଗରର ଅତଳ ଗଭୀରତା । ବାୟୁ ମଣ୍ଡଳରୁ ଜୈବ ମଣ୍ଡଳ ପର୍ଯ୍ୟନ୍ତ । ଏଥିରୁ ଅନେକ ତଥ୍ୟ ସେ ଆବିଷ୍କାର କଲାଣି । ସାଧାରଣ ଜନମାନସ ଆଜି ବୁଦ୍ଧିମନ୍ତ । ତଥାପି ଅନେକ କଥା ଏପର୍ଯ୍ୟନ୍ତ ରହିଚି ଲୁକ୍‌କାୟିତ ।

ବିଜ୍ଞାନର ଅଗ୍ରଗତି ସହ ଭୌଗଳିକବିଦ୍ ନିଜର ପରୀକ୍ଷା ନିରୀକ୍ଷା ପାଇଁ ଜଳଭାଗକୁ ପାଞ୍ଚଭାଗରେ ବିଭକ୍ତ କରଛନ୍ତି । ସେମାନଙ୍କର ନାଁ ରଖିଛନ୍ତି ପ୍ରଶାନ୍ତ ମହାସାଗର, ଆଟଲାଣ୍ଟିକ୍ ମହାସାଗର, ଭାରତ ମହାସାଗର, ଉତ୍ତର ମହାସାଗର ଓ ଦକ୍ଷିଣ ମହାସାଗର । ପୃଥିବୀର ୨ୟ ମହାସାଗର ଭାବେ ସ୍ୱୀକୃତ ଆଟଲାଣ୍ଟିକ ମହାସାଗରର ଏକ ପାର୍ଶ୍ୱରେ ଉତ୍ତର ଓ ଦକ୍ଷିଣ ଆମେରିକା । ଅପରପାର୍ଶ୍ୱରେ ଇୟୁରୋପ ଓ ଆଫ୍ରିକା ମହାଦେଶ ଅବସ୍ଥିତ ଥିବା ଦୃଷ୍ଟେ ନୌବାଣିଜ୍ୟ କ୍ଷେତ୍ରରେ ଏହି ମହାସାଗରଟି ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଅନେକ ନୌଜାହାଜ ଏହି ମହାସାଗର ବକ୍ଷରେ ଯାତାୟତ କରୁଥିଲେ ବି ଏହାର ଅନନ୍ତ ବକ୍ଷର ବିସ୍ମୟତା ସମଗ୍ର ଜନମାନସକୁ ବିସ୍ମିତ କରିଛି । ଯାହା ଆଜି ବରମୁଡ଼ା ତ୍ରିକୋଣଭୂମି (Bermuda Triangle) ଭାବେ ପରିଚିତ ।

ଆଜନ୍ମ ଜ୍ଞାନ ପିପାସୁ ମଣିଷ ମନରେ ଥରେ ଜିଜ୍ଞାସାର ବୀଜଟିଏ ଅଙ୍କୁରି ଉଠିଲେ ଚରିତାର୍ଥ ନହେବାଯାଏ ମରେନା । ପଶ୍ଚିମ ଆଟ୍‌ଲାଣ୍ଟିକ୍‌ରେ ଅବସ୍ଥିତ



*ବର୍ମୁଡ଼ା ତ୍ରିଭୁଜରେ ଗବେଷଣାରତ ଆମେରିକା ଓ ରୁଷ୍ ବୈଜ୍ଞାନିକଗଣ*

ବରମୁଡ଼ା ତ୍ରିକୋଣଭୂମିରେ ନୌଜାହାଜ ଓ ତହିଁରେ ଥିବା ନାବିକ ସମେତ ହଜାର ହଜାର ନୌଯାତ୍ରୀ ନିଖୋଜ ହେବାର ସଂବାଦଟା ପ୍ରସରିଯିବାପରେ ଉପକୂଳବର୍ତ୍ତୀ ଅଞ୍ଚଳର ବୈଜ୍ଞାନିକ ଓ ଭୌଗଳିକବିତ୍‌ମାନେ ଆରମ୍ଭ କରିଦେଲେ ନିଜ ନିଜର ପରୀକ୍ଷା । ନୌଜାହାଜର ନିଖୋଜର କାରଣ, ନୌଜାହାଜଟିର ଭଗ୍ନାବଶେଷ, ଜୀବନ୍ତ ବା ମୃତ ନୌଯାତ୍ରୀଙ୍କ ଶରୀର ଅନ୍ୱେଷଣରେ ଥିବା ଜିଜ୍ଞାସୁ ମଣିଷମାନେ କୌଣସି ସନ୍ଧାନ ପାଇଲେନି । ଅପରନ୍ତୁ ଶତାଧିକ ନୌଜାହାଜ, ଅନେକ

ଉଡ଼ାଜାହାଜ ପୁଣି ହେଲା ନିଖୋଜ । ବୈଜ୍ଞାନିକମାନେ ହୋଇଗଲେ ଆହୁରି ସ୍ତମ୍ଭୀଭୂତ । ବୈଜ୍ଞାନିକ, ସାଗର ବିଶାରଦ, ଭୌଗୋଳିକବିତ୍ ଖୋଜି ଚାଲିଲେ ରହସ୍ୟ ସାଗରରୁ ସାଗର, ସହରରୁ ସହର, ଦେଶରୁ ଦେଶାନ୍ତର । କିମିତି ଓ କାହିଁକି ଜାହାଜ ଗୁଡ଼ିକ ନିଖୋଜ ହେଲା ।

ଫ୍ଲୋରିଡ଼ା, ବରମୁଡ଼ା ଓ ପୁଇର୍ତ୍ତୋରିକା ମଧ୍ୟରେ ଅବସ୍ଥିତ ଥିବା ଏହି ବିପଦ ଶଙ୍କୁଳ ତ୍ରିକୋଣଭୂମି ଉପରେ ନିଜର ଗବେଷଣା ଅବ୍ୟାହତ ରଖି ନିଜ ନିଜର ସଂଦର୍ଭ ପ୍ରକାଶ କଲେ ଗବେଷକମାନେ । ପ୍ରଥମେ କୁହାଗଲା ସଂପୃକ୍ତ ସ୍ଥାନଟିରେ ମାଧ୍ୟାକର୍ଷଣ ଶକ୍ତିର ପ୍ରଖରତା ଦୃଷ୍ଟେ ନୌଜାହାଜ ଓ ଉଡ଼ାଜାହାଜ ଗୁଡ଼ିକୁ ନିଜ କୋଳକୁ ଟାଣି ନେଇଛି । କେହି କେହି ସଂଦେହ କଲେ ବରମୁଡ଼ା ତ୍ରିକୋଣଭୂମିରେ ଅବଲୁପ୍ତ ଆଟ୍ଲାଣ୍ଟିକ୍ ସଭ୍ୟତାର ଅତ୍ୟାଧୁନିକ ଯନ୍ତ୍ରଗୁଡ଼ିକ ଏ ପର୍ଯ୍ୟନ୍ତ ସକ୍ଷମ ଥିବାରୁ ନୌଜାହାଜ, ଉଡ଼ାଜାହାଜ, ନାବିକ ଓ ଯାତ୍ରୀମାନଙ୍କୁ ଭିଡ଼ି ନେଇଛି । ଆଉ କେହି କେହି କହିଲେ ଯେ ଏହା ଆମ ଭୂପୃଷ୍ଠର ଅଂଶ ବିଶେଷ ନୁହେଁ । ଅନ୍ୟ ଏକ ଉପଗ୍ରହର ହତ୍ୟା କେନ୍ଦ୍ର ନିଶ୍ଚୟ ।

ଏ ସମସ୍ତ ପରିକଳ୍ପନା ଜନମାନସକୁ ସନ୍ତୁଷ୍ଟ କଲା ନାହିଁ । ପ୍ରକୃତ ସତ୍ୟତା ଜାଣିବା ପାଇଁ ଚେଷ୍ଟା ଅବ୍ୟାହତ ରହିଲା ।

୧୯୬୪ ମସିହାରେ ଭିନ୍ସେଣ୍ଟ. ଏଚ. ଗାଡ଼ିସ୍ (Vincent H. Gaddis)ଙ୍କ ଦ୍ୱାରା ବରମୁଡ଼ା ତ୍ରିକୋଣଭୂମି ସଂପର୍କୀୟ ନିବନ୍ଧ ଆର୍‌ଗୋସି (Argosy) ପତ୍ରିକାରେ ସର୍ବପ୍ରଥମେ ପ୍ରକାଶ ପାଇଲା । ଏହି ନିବଂଧକୁ ଭିତ୍ତିକରି ପରେ ପରେ ଅନେକ ନିବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହେଲା । ଇଭାନ ଟି. ସାନ୍ଦରସନ (Ivon T. Sandarson) ଏହି ଅଜଣା ତ୍ରିକୋଣଭୂମିକୁ "ଭାଇଲ୍ ଭରଟିକ୍ସ" (Vile Vertices)ର ଆଖ୍ୟା ଦେଲେ ।

ପ୍ରକାଶିତ ନିବନ୍ଧ ଗୁଡ଼ିକ ଜନମାନସରେ ଖୁବ୍ ପ୍ରଭାବ ବିସ୍ତାର କଲା ଓ ୧୯୭୩ ମସିହାରେ ଏହା ଏନ୍ସାଇକ୍ଲୋପେଡ଼ିଆରେ ସ୍ଥାନିତ ହବା ସଂଗେ ସଂଗେ "ଲିମ୍ବୋ ଅଫ୍ ଦି ଲଷ୍ଟ" (Limbo of the lost), ନାମକ ଏକ ପୁସ୍ତକ ୱାଲ୍ସ ସେନସର (Wallace Spencer)ଙ୍କ ଦ୍ୱାରା ପ୍ରକାଶ ପାଇଲା ।

୧୯୭୪ ମସିହାରେ ଚାର୍ଲସ ବର୍ଲିଜ୍ (Charles Berlitz)ଙ୍କ ଦ୍ୱାରା ଲିଖିତ 'ଦି ବରମୁଡ଼ା ଟ୍ରାଙ୍ଗଲ" (The Bermuda Triangle) ସର୍ବାଧିକ ବିକ୍ରିତ ପୁସ୍ତକର ଖ୍ୟାତି ଅର୍ଜନ କଲା । ଲରେନ୍ସ ଡ଼ି କୁଷି (Lawrence D Kusche), ପ୍ରକାଶ ପାଉଥିବା ପୁସ୍ତକମାନଙ୍କର ପ୍ରକାଶିତ ତଥ୍ୟ ଉପରେ ସନ୍ଦୀହାନ ହୋଇ ନିଜେ ଏକ ପୁସ୍ତକ ରଚନା କଲେ । ପୂର୍ବ ପ୍ରକାଶିତ ସମସ୍ତ ଯୁକ୍ତିକୁ ଖଣ୍ଡନ କରୁଥିବାରୁ ତାଙ୍କ ପୁସ୍ତକର ନାଁ ରଖିଲେ

"ଦି ବରମୁଡ଼ା ଟ୍ରିଙ୍ଗଲ ମିଷ୍ଟ୍ରି ସଲ୍‌ଭଡ୍" (The Bermuda Triangle Mystry Solved) ।

କୁଶି ଖୁବ୍ ବାସ୍ତବବାଦୀ ଥିଲେ । ତାଙ୍କ ପୁସ୍ତକରେ ସେ ପ୍ରଥମ ପ୍ରଶ୍ନ କରିଥିଲେ ସତରେ କଣ ରହସ୍ୟତା ଲୁଚି ରହିଚି ସେଇ ତ୍ରିକୋଣ ଭୂମିଟିରେ । ଏକ ଅଭିନବ ଉପାୟରେ ସମସ୍ତ ଘଟଣାକୁ ସେ ଅବତାରଣ କଲେ । ପୂର୍ବରୁ କୁହାଯାଉଥିବା ୧୮୦୦ ମସିହାରେ ବରମୁଡ଼ା ତ୍ରିକୋଣଭୂମିରେ ନିଖୋଜ ହୋଇଥିବା ନୌଜାହାଜ ଓ ଉଡ଼ାଜାହାଜ ଘଟଣାକୁ ତର୍ଜମା କଲେ । ସମସ୍ତଙ୍କୁ ପୁଣି ସଂଦେହର ଘନ କୁହୁଡ଼ି ଭିତରକୁ ଟାଣିନେଇ ସେ ଉପସ୍ଥାପିତ କଲେ ଯେ ବରମୁଡ଼ା ତ୍ରିକୋଣଭୂମିରେ କୌଣସି ଦୁର୍ଘଟଣା କେବେବି ଘଟିନି । ଏ ଯାବତ୍ ଯାହା କୁହାଯାଇଛି ତାହା କପୋଳ କଳ୍ପିତ ।

ନିଜର ଯୁକ୍ତିକୁ ପ୍ରମାଣିତ କରିବା ପାଇଁ କୁଶି ୧୯୪୫ ମସିହାରେ ଦୁର୍ଘଟଣାକୁ ପୁନଃ ଉପସ୍ଥାପନା କଲେ । ୧୯୪୫ ମସିହା ଡିସେମ୍ବର ୫ ତାରିଖରେ କାର୍ଯ୍ୟରତ ୫ଟି ଟର୍ପେଡ଼ୋ ନିଖୋଜ ହୋଇଥିଲା । ନାବିକମାନଙ୍କ ଦ୍ୱାରା ପରିଚାଳିତ ଟର୍ପେଡ଼ୋ ଗୁଡ଼ିକ ବାରମ୍ବାର ନିୟନ୍ତ୍ରଣ କେନ୍ଦ୍ରକୁ ସଂବାଦ ପରିବେଷଣ କରୁଥିଲେ । ମାତ୍ର ସେମାନଙ୍କର ନିଖୋଜ ପୂର୍ବରୁ ନିୟନ୍ତ୍ରଣ କେନ୍ଦ୍ରର ହସ୍ତଗତ ହୋଇଥିବା ବିବରଣୀରୁ ଜଣାଯାଏ ଯେ "ଆମେ ବର୍ତ୍ତମାନ ଦିଗ ନିର୍ଣ୍ଣୟ କରିପାରୁନୁ । ପ୍ରତ୍ୟେକ ଜିନିଷ ଭୁଲ୍ ଜଣାଯାଉଚି । ଏଠି ସମୁଦ୍ର ଅଲଗା ଲାଗୁଚି ।" କିଛି ସମୟର ନୀରବତା ପରେ ନିୟନ୍ତ୍ରଣ କେନ୍ଦ୍ରରେ ନାବିକମାନଙ୍କର ଶେଷ କଣ୍ଠସ୍ୱର ଶୁଣାଗଲା, "ଆମେ କୂଳଠାରୁ ୨୦୨୫ ମାଇଲ ଉତ୍ତରପୂର୍ବରେ ଅଛୁ । ଏହା ଠିକ୍... ।" ତା'ପରେ ସବୁ ନୀରବି ଗଲା । ନିୟନ୍ତ୍ରଣ କେନ୍ଦ୍ର ସଂଗେ ସଂଗେ ୧୩ଜଣ ସାହାସୀ ନାବିକଙ୍କୁ ସାମରିକ ଉଡ଼ାଜାହାଜ ଯୋଗେ ଟର୍ପେଡୋ ଅନୁସନ୍ଧାନ ପାଇଁ ପଠାଇଲା । ଏହି ଉଡ଼ାଜାହାଜଟି ନିୟନ୍ତ୍ରଣ କେନ୍ଦ୍ର ସହ କିଛି ସମୟ ପାଇଁ ସଂପର୍କ ରଖିଲେ ମଧ ଜାହାଜଟି ନିଖୋଜ ହେଲା ।

ନୌସେନାଦଳ ସାଗର ଭିତରେ ଖୋଜି ବୁଲିଲେ ସେମାନଙ୍କର ସହକର୍ମୀଙ୍କୁ । ଟର୍ପେଡୋମାନଙ୍କୁ ଓ ଉଡ଼ାଜାହାଜଟିକୁ । ଟିକିଏ ବି ଧ୍ୱଂସାବଶେଷ ମିଳିଲାନି କାହାରି । ତେଣୁ କୁଶି ଯୁକ୍ତି କଲେ ଯଦି ବରମୁଡ଼ା ତ୍ରିକୋଣଭୂମିରେ ପୃଥିବୀର ସର୍ବାଧିକ ମାଧ୍ୟାକର୍ଷଣ ଶକ୍ତି ଠୁଳ ହୋଇଥିବା ଦୃଷ୍ଟେ ଶତାଧିକ ନୌଜାହାଜ ଓ ଉଡ଼ାଜାହାଜକୁ ନିଜ ଗର୍ଭକୁ ନିକ୍ଷେପ କରିଛି ତାହାହେଲେ ଅନ୍ୟସ୍ଥାନରେ ଏ ଘଟଣା ଘଟିଲା କାହିଁକି ?

ଅନେକ ଅନୁସନ୍ଧାନ ପରେ ଉକ୍ତ ଘଟଣା ସଂବନ୍ଧୀୟ ନୌବାହିନୀର ବିବରଣୀ କୁଶିଙ୍କ ହସ୍ତଗତ ହେଲା । ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ସେ ଘୋଷଣା କଲେ ସେ ସମୟରେ କୁହାଯାଇଥିବା ଦକ୍ଷ ନାବିକମାନଙ୍କ ଦ୍ୱାରା ପରିଚାଳିତ ଟର୍ପେଡ଼ୋ ନିଖୋଜ ହେବା

ସଂବାଦଟି ମିଥ୍ୟା । ଲେଫ୍ଟନାଣ୍ଟ ଚାର୍ଲସ ଟେଲରଙ୍କ ବ୍ୟତୀତ ଅନ୍ୟ ସମସ୍ତ ନାବିକ ନୂଆ ଥିଲେ ଓ ଟେଲର ମଧ୍ୟ ସେ ସ୍ଥାନ ପାଇଁ ସଂପୂର୍ଣ୍ଣ ନବାଗତ ଥିଲେ । ନିୟନ୍ତ୍ରଣ କେନ୍ଦ୍ର ସହ ଟର୍ପେଡ଼ୋ ଗୁଡ଼ିକର ଆଦୌ ସଂବାଦ ବିନିମୟ ହୋଇନଥିଲା । ଏହି ଦୁର୍ଘଟଣା କାରଣ ସମ୍ପର୍କେ ସେ ବର୍ଣ୍ଣନା କଲେ ଯେ ନୌଜାହାଜର ଦିଗ ନିର୍ଣ୍ଣୟକ ଯନ୍ତ୍ରଟି ହଠାତ୍ ଅକାମି ହେବା ସଂଗେ ସଂଗେ ଜାହାଜରୁ ଜାଳେଣି ଶେଷ ହୋଇଯିବାରୁ ରାତ୍ର ୮ଘଟିକା ସମୟରେ ସମୁଦ୍ରର ଘଞ୍ଚ ଅନ୍ଧାର ଭିତରେ ଏହି ଦୁର୍ଘଟଣା ଘଟିଲା । ଏହାର ମାତ୍ର କେତେ ମାଇଲ ଦୂରରେ ଥିବା ପାଣି ଜାହାଜ ''ଜେନ୍ସ ମିଲର''ର ନାବିକମାନେ ସମୁଦ୍ର ମଧ୍ୟରେ ଏକ ବିସ୍ଫୋରଣ ଘଟିଥିବାର ଦେଖିଲେ ।

ବିଳମ୍ବରେ ହେଲେ ସୁଦ୍ଧା ଘଟଣା ସମ୍ପର୍କେ କୁଶିଙ୍କର ବର୍ଣ୍ଣନା ଠିକ୍ ହୋଇପାରେ । ଯୁକ୍ତରାଷ୍ଟ୍ର ଆମେରିକା ଓ ରୁଷର ମିଳିତ ବୈଜ୍ଞାନିକ ମଣ୍ଡଳୀ ଘଟଣାକୁ ''ଯଦି'' ଓ ''ଏବଂ'' ମଧ୍ୟରେ ସୀମିତ ନରଖି ଆଟ୍‌ଲାଣ୍ଟିକ୍ ମହାସାଗରର ଜଳ ଏହି ନିର୍ଦ୍ଦିଷ୍ଟ ସ୍ଥାନରେ ଭଉଁରୀ ଖାଉଥିବାର କହୁଥିଲେ ମଧ ରହସ୍ୟର କୌଣସି ସନ୍ଧାନ ପାଇନାହାନ୍ତି । ଯୁକ୍ତରାଷ୍ଟ୍ର ଆମେରିକାର ଉପକୂଳ ରକ୍ଷକମାନେ କୁଶିଙ୍କ ମତସହ ଏକମତ ହୋଇଛନ୍ତି ।

ପ୍ରକୃତିର ସଂଗଠିତ ଶକ୍ତି ବିରୁଦ୍ଧରେ ମାନବ ଯୁଦ୍ଧ କରି ଆସୁଛି । ପରାହତ ଭବିଷ୍ୟତର ସୁଖ ସମୃଦ୍ଧି ପାଇଁ ବିଜ୍ଞାନ ଚେଷ୍ଟିତ, ଆଜି ବିସ୍ମୟର ଘେରରେ ବରମୁଡ଼ା ତ୍ରିକୋଣଭୂମି । ଏହା ଆଇମା କାହାଣୀର ବୁଢ଼ୀ ଅସୁରୁଣୀ ରାଜ୍ୟ ନା ଆମ ଏଇ ଭୂପୃଷ୍ଠର ଅଂଶବିଶେଷ । କିଏ କହିବ ସେ କଥା ? ନିଖୋଜ ଜାହାଜ ନା ଏହାର ନାବିକ ?



# ପାରାଡାଇଜ୍ ଲଷ୍ଟ

*ଏ ଆଦୌ ପରୀ ରାଇଜର କାହାଣୀ ନୁହେଁ । ଆଟ୍‌ଲାଣ୍ଟିକ୍ ମହାସାଗର ଗର୍ଭରେ ବିଲୁପ୍ତ ହୋଇ ଯାଇଥିବା ଗୋଟେ ଦ୍ୱୀପ, ଗୋଟେ ସଭ୍ୟତାର ସକରୁଣ ଗାଥା, ଯେଉଁ ଦ୍ୱୀପଟି ଏକଦା ପରିଚିତ ଥିଲା ମର୍ତ୍ତ୍ୟର ନନ୍ଦନକାନନ ନାମରେ ।*

*ସେଇ ଦ୍ୱୀପ ଉପରେ ଏ ଯାବତ୍ ରଚିତ ହୋଇ ସାରିଚି ପ୍ରାୟ କୋଡ଼ିଏ ହଜାରରୁ ଊର୍ଦ୍ଧ୍ୱ ପୁସ୍ତକ । ଏ ଯାବଧି ଅବ୍ୟାହତ ରହିଛି ନାନା ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା ।*

*ସତରେ କ'ଣ ସେଇ ଦ୍ୱୀପର ପ୍ରଥମେ ରାଜା ଥିଲେ ଆଟ୍‌ଲାସ୍ ! ସତରେ କ'ଣ ସେଇ ଦ୍ୱୀପଟି ଲାର୍ଭା ଉଦ୍‌ଗୀରଣରେ ପାଲଟି ଯାଇଚି ପାଉଁଶ !*

ନୀଳ ସମୁଦ୍ର ରହସ୍ୟାବୃତ୍ତ । ବିଜ୍ଞାନର ଅଗ୍ରଗତି ସହ ଜିଜ୍ଞାସୁ ମଣିଷ ଅନେକ ପରୀକ୍ଷା ନିରୀକ୍ଷା କରିଚାଲିଛି । ସାଗରର ଅତଳ ଗର୍ଭ ଭିତରେ ଥିବା ଅନେକ ତଥ୍ୟର ଆବିଷ୍କାର କଲାଣି । ମାତ୍ର ଆଟଲାଣ୍ଟିକ୍ ମହାସାଗର ଗର୍ଭରେ ପୃଥିବୀର ସର୍ବପ୍ରାଚୀନ ସଭ୍ୟତା ଯେ ବିଲୁପ୍ତ ହୋଇଯାଇଛି ଭାବିବାବେଳେ କଥାଟି ପରୀରାଇଜର କାହାଣୀପରି ଜଣାଯାଏ ।

ପ୍ରାୟ ୩୫୦୦ ବର୍ଷ ତଳର କଥା । ଆଟ୍‌ଲାଣ୍ଟିକ୍ ମହାସାଗର ମଝିରେ ଦ୍ୱୀପଟିଏ ଥିଲା । ନାଁ ତାର ଆଟ୍‌ଲାଣ୍ଟିକ୍ ଦ୍ୱୀପ । ଆୟତନ ତୁଳନାରେ କ୍ଷୁଦ୍ର ଥିଲେବି ଚର୍ତୁପାର୍ଶ୍ୱରେ ନୀଳ ସମୁଦ୍ର, ପ୍ରକୃତିର ଅନୁପମ ଶୋଭା, ହସପରି ଜହ୍ନ, ସୂର୍ଯ୍ୟଙ୍କର ଶୀତଳ କିରଣ ଜନମାନସକୁ ବିମୁଗ୍ଧ କରୁଥିଲା । ଲୋକମାନେ ବେଶ୍ ହସଖୁସିରେ ସମୟ କଟାଉଥିଲେ । ସତେ ଯେମିତି ସ୍ୱର୍ଗଟିଏ ମର୍ତ୍ତ୍ୟରେ !

ଦିନେ ରାତିରେ ହଠାତ୍ ସମୁଦ୍ର ଅଶାନ୍ତ ହୋଇ ଉଠିଲା । ଖୁବ୍ ଜୋର୍‌ରେ ପବନ ବହିଲା । ଚାରିଆଡ଼େ କଳା ଧୂଆଁ ଛାଇଗଲା । ବିକଟାଳ ଶବ୍ଦମାନ ଶୁଣାଗଲା । ଶାନ୍ତ ଜନମାନସ ବ୍ୟସ୍ତ ହୋଇପଡ଼ିଲା । ସମସ୍ତେ ଭାବିଲେ ଈଶ୍ୱର ତାଙ୍କ ଅନନ୍ତ ଶୟନର କଡ଼ ଲେଉଟାଉଛନ୍ତି । ଚେଇଁ ଉଠୁଥିବା ସୁପ୍ତ ଅଗ୍ନେୟଗିରି ଶୋଇପଡ଼ିବ । କଳା ବାଦଲ ଅପସରିଯିବ । ସୌରଭରେ ସାରା ଦ୍ୱୀପଟା ମହକି ଉଠିବ ଈଶ୍ୱରଙ୍କ କଡ଼ ଲେଉଟାଇବା ପରେ ପରେ ।

ସରଳ ମଣିଷର ତାରା ପରି ଦିଗ୍ ଦିଗ୍ କରୁଥିବା ସ୍ୱପ୍ନମାନେ ଉଭେଇଗଲେ । ସମୁଦ୍ର ଅଶାନ୍ତରୁ ଅଶାନ୍ତ ହେଲା । ପ୍ରବଳ ଜୁଆର ମାଡ଼ିଆସିଲା । ଆଗ୍ନେୟଗିରିର ତତଲା ନିଶ୍ୱାସ ଚାରିଆଡ଼େ ଛାଇଗଲା । ସର୍ବପ୍ରାଚୀନ ସଭ୍ୟତା ସମୁଦ୍ରର ଅତଳ ଗର୍ଭରେ ବିଲୀନ ହେଲା ।


ଆଟ୍‌ଲାଣ୍ଟିକ୍‌ର ପ୍ରଥମ ରାଜା

ଏହି ବିଲୁପ୍ତ ଦ୍ୱୀପ ସମ୍ପର୍କରେ ବୈଜ୍ଞାନିକ ଓ ଭୂକମ୍ପତତ୍ତ୍ୱବିତ୍ ମତ ଦିଅନ୍ତି ଯେ, ୫୦୦ରୁ ୧୦୦୦ ପର୍ଯ୍ୟନ୍ତ ପରମାଣୁ ବୋମା ଏକ ସଙ୍ଗରେ ବିସ୍ଫୋରଣ ଘଟିଲେ ଯେତିକି ପାଉଁଶ ଗଦା ହୋଇ ରହିବ ସେତିକି ପାଉଁଶ ଆଟ୍‌ଲାଣ୍ଟିକ୍ ଦ୍ୱୀପରେ ପଡ଼ି ରହିଛି ।

ଗ୍ରୀକ୍‌ମାନେ ଏହାକୁ କ୍ୟାଲିଷ୍ଟି ବୋଲି କହିଲେ । ଏହି କ୍ୟାଲିଷ୍ଟି ଐତିହାସିକ ଓ ଭୂଗୋଳଶାସ୍ତ୍ରଜ୍ଞଙ୍କୁ ସନ୍ଦେହରୁ ମୁକ୍ତ କରି ଘଟଣା ସମ୍ପର୍କେ ନିର୍ବାକ୍ କରିଦେଲା । ପ୍ଲୁଟୋ ଏହାକୁ ନନ୍ଦନକାନନ ବୋଲି ଆଖ୍ୟା ଦେଲେ । ସବୁଜ କ୍ଷେତ, ଘଞ୍ଚ ଅରଣ୍ୟ, କଳ ନିନାଦିନୀ ଝରଣା, ପଶୁପକ୍ଷୀମାନଙ୍କର କଣ୍ଠସ୍ୱର, ନଭଶ୍ଚୁମ୍ବି ଅଟ୍ଟାଳିକା ଓ ମୂଲ୍ୟବାନ ଖଣିଜ ସମ୍ପଦରେ ଭରପୂର ଏହି ଦ୍ୱୀପ ମଧ୍ୟରେ ଏକ ମନ୍ଦିର ଥିଲା । ତା ଭିତରେ ସୁବର୍ଣ୍ଣ ନିର୍ମିତ ଈଶ୍ୱରଙ୍କ ପ୍ରତିମୂର୍ତ୍ତିଟିଏ ରଥ ଉପରେ ରଖାଯାଇଥିଲା । ରଥରେ ଛଅଟି ଘୋଡ଼ାଙ୍କର ମୂର୍ତ୍ତି ଖୋଦିତ ହୋଇଥିଲା । ଏହାର ଅଧିବାସୀମାନେ କହୁଥିଲେଯେ ମହାସାଗରର ଦେବତା ମନ୍ଦିର ଭିତରେ ଥିବା ରଥ ଉପରେ ବସି ମର୍ତ୍ତ୍ୟରେ ଆବିର୍ଭାବ [illegible]ନ୍ତି । ସମସ୍ତେ ଏହି

ଠାକୁରଙ୍କୁ ମାନୁଥିଲେ । କ୍ରମେ ଆଟ୍‌ଲାଣ୍ଟିକ୍ ଅଧିବାସୀ ଖୁବ୍ ଅହଂକାରୀ ହୋଇ ଉଠିଲେ । ଅଧିକରୁ ଅଧିକ ଅନ୍ୟାୟ କଲେ । ସେହି କୁଫଳର ପରିଣାମ ସ୍ୱରୂପ ୧୨୦୦୦ ବର୍ଷ ପୂର୍ବେ ଏକ ବିରାଟ ଧରଣର ଭୂମିକମ୍ପ ହେଲା । ଆଗ୍ନେୟଗିରିରୁ ଉତପ୍ତ ଲାଭାର ଉଦ୍‌ଗୀରଣ ଯୋଗୁଁ ଦ୍ୱୀପଟି ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହେଲା ।

ପ୍ଲୁଟୋଙ୍କ ମତ ଐତିହାସିକମାନଙ୍କ ମଧ୍ୟରେ ପୁନଃ ସନ୍ଦେହର ଘନ କୁହୁଡ଼ି ବିଛାଇଦେଲେ ବି ପୁରୁଷାନୁକ୍ରମେ ଏହି ତଥ୍ୟକୁ ସମସ୍ତେ ବିଶ୍ୱାସ କଲେ । କ୍ରିଟିଆବି ତାଙ୍କ ବୁଢ଼ାବାପା ଡ୍ରୋପି ଡ୍ରେସ୍, ଡ୍ରୋପି ଡ୍ରେସ୍- ସୋଲେନ୍‌ଙ୍କ ଠାରୁ କଥାଟି ପର୍ଯ୍ୟାୟକ୍ରମେ ଶୁଣାଯାଇଥିଲା । ସୋଲେନ୍ ଗ୍ରୀକ୍ ରାଜ୍ୟରେ ଜଣେ ସତ୍ୟନିଷ୍ଠ ବ୍ୟକ୍ତିଭାବେ ପରିଚିତ ଥିଲେ । ଖ୍ରୀଷ୍ଟପୂର୍ବ ୬୪୦ରୁ ୫୫୮ ପର୍ଯ୍ୟନ୍ତ ବଞ୍ଚିଥିବା ସୋଲେନ୍ ଗ୍ରୀକ୍‌ର ସାତ ସନ୍ଥଙ୍କ ମଧ୍ୟରେ ଗଣତି ହେଉଥିଲେ । ମାତ୍ର ପ୍ଲୁଟୋ ଦୁଇ ଶତାବ୍ଦୀ ପୂର୍ବେ ଏହାକୁ ଲେଖିଥିଲେ ।

ସୋଲେନ୍ କହିଥିଲେ ଯେ, ଗପଟି ସେ ନିଜ ପ୍ରଚେଷ୍ଟାରେ ଜାଣିନଥିଲେ । ଇଜିପ୍ଟର ଧର୍ମଯାଜକଙ୍କ ଠାରୁ ଗପଟି ଶୁଣିଲା ପରେ ସେ ବିମୁଗ୍ଧ ହୋଇ ଗ୍ରୀକ୍ ଭାଷାରେ ଏକ କବିତା ରଚନା କରିଥିଲେ । ତେଣୁ ପ୍ଲୁଟୋଙ୍କ ମତାମତ ଇତିହାସର ଭିତ୍ତିଭୂମି ପରିବର୍ତ୍ତେ ଆଧ୍ୟାତ୍ମିକ ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲା । ଆରିଷ୍ଟୋଟଲଙ୍କ କହିବା ଅନୁଯାୟୀ ଘଟଣାଟି କବିର ଚାତୁର୍ଯ୍ୟଭାବେ ଗ୍ରହଣ ନ ହୋଇ ଏକ ଐଶୋରୀୟ ଭାବଧାରା ଜନମାନସରେ ସୃଷ୍ଟି କଲା ।

ଖ୍ରୀଷ୍ଟପୂର୍ବ ୩୦୦ ଠାରୁ ଖ୍ରୀ.ପୂ. ୫୦ ପର୍ଯ୍ୟନ୍ତ ଆଟ୍‌ଲାଣ୍ଟିକ୍ ଦ୍ୱୀପର ସତ୍ତା ସମ୍ପର୍କରେ ସନ୍ଦେହର କୁହେଳିକା ସୃଷ୍ଟି ହେଲା । ଷ୍ଟୋଇକ ଦାର୍ଶନିକ ତଥା ବିଦ୍ୱାନ ପୋଷିଡୋନିୟମ ପ୍ଲୁଟୋଙ୍କ ତଥ୍ୟକୁ ବିଶ୍ୱାସ କଲେନି । ଏହା ଘଟଣାକୁ ଆଉ ଏକ ବିବାଦମାନ ପରିସ୍ଥିତିକୁ ଟାଣିନେଲା ।

୧୫ଶ ଶତାବ୍ଦୀ ବେଳକୁ ଆଟ୍‌ଲାଣ୍ଟିକ୍‌ର ଏକ କପୋଳ କଳ୍ପିତ ମାନଚିତ୍ର ଅଙ୍କିତ ହେଲା । ଆମେରିକା ଦ୍ୱାରା ଏହା ଆବିଷ୍କୃତ ହେବା ସମୟରେ ଦେଖାଗଲା ଯେ ସେଠାରେ ଆଦୌ ସ୍ଥଳଭାଗ ନାହିଁ ।

ଏହି ରହସ୍ୟ ଦ୍ୱୀପର ଅଧିକ ଜ୍ଞାତବ୍ୟ ନିମନ୍ତେ ଆମେରିକାରେ ଆଟ୍‌ଲାଟୋବି ନାମକ ଏକ ବିଜ୍ଞାନାଗାର ଖୋଲିଲା । ଇଗ୍‌ନାଟିୟମ୍ ଡୋନେଲି ନାମକ ଆଟ୍‌ଲାଣ୍ଟୋବିର ସଦସ୍ୟ ତଥା ଯୁକ୍ତରାଷ୍ଟ୍ର କଂଗ୍ରେସ ଦଳର ସଦସ୍ୟ ''Atlanties: The Antediluvion World'' ନାମକ ଏକ ଗବେଷଣାତ୍ମକ ପୁସ୍ତକ ରଚନା କଲେ । କଲମ୍ବିଆନ୍ ସଭ୍ୟତା ଓ ଇଜିପ୍ଟ ସଂସ୍କୃତି ମଧ୍ୟରେ ସାମଞ୍ଜସ୍ୟ ଥାଇ ରଚିତ ଏହି ପୁସ୍ତକ ଜନମାନସରେ ଆଦୃତ ହେଲା । ଏହି ପୁସ୍ତକରେ ଡୋନେଲି ଉଲ୍ଲେଖ କରିଥିଲେ ଯେ ଉଭୟ ସଭ୍ୟତା

ଆଟ୍‌ଲାଣ୍ଟିକ୍ ସଭ୍ୟତା ଭାବେ ପରିଚିତ ଥିଲା । ଭୂକମ୍ପନ ଦ୍ୱାରା ଏହା ପୃଥକ ହେଲା । ଏଥିପାଇଁ ସେ ପୌରାଣିକ, ମାନବବାଦ, ଭୂତତ୍ତ୍ୱବିତ୍ ଓ ଉଦ୍ଭିଦ ବିଜ୍ଞାନର ସହାୟତା ନେଇଥିଲେ ବି ତାଙ୍କ ଅକାଟ୍ୟ ଯୁକ୍ତି ଆଟ୍‌ଲାଣ୍ଟିକ୍‌ର ଅବସ୍ଥିତି ସମ୍ପର୍କେ ଜନମାନସର ବିଶ୍ୱାସକୁ ଦୃଢ଼ୀଭୂତ କଲା ।

ବିଂଶ ଶତାବ୍ଦୀର ସାଗର ବିଶାରଦମାନେ ଡନ୍‌ଲିଙ୍କ ମତକୁ ଖଣ୍ଡନ କଲେ ଓ ମତଦେଲେ ଯେ ୧୨୫୦୦ ମାଇଲ ଉତ୍ତର-ଦକ୍ଷିଣ ଦୈର୍ଘ୍ୟ ବିଶିଷ୍ଟ ଏକ ପାର୍ବତ୍ୟାଞ୍ଚଳ ଆଟ୍‌ଲାଣ୍ଟିକ୍ ମହାସାଗର ମଧ୍ୟରେ ଅବସ୍ଥିତ ଥିଲେ ସୁଦ୍ଧା ୩୬କୋଟି ବର୍ଗମାଇଲ ପରିମିତ ଆଟ୍‌ଲାଣ୍ଟିକ୍ ଦ୍ୱୀପ ଅତଳ ସମୁଦ୍ରରେ ଲୀନ ହେବାର କୌଣସି ସୂଚନା ମିଳୁନାହିଁ । ଏ ସମ୍ବନ୍ଧେ Dr. Poul Sehlimannଙ୍କ ଦ୍ୱାରା ରଚିତ ନିବନ୍ଧ "How I found lost Allantis, the source of all Civilization" ପ୍ରକାଶିତ ହେବାପରେ ଘଟଣାଟିକୁ ପୁଣି ବିବାଦକୁ ଟାଣିନେଇଥିଲା । ଏହି ନିବନ୍ଧ ଯେ Sehlimann ତାଙ୍କ ଅଜା ତଥା ଆବିଷ୍କାରକ Tray ଙ୍କ ଠାରୁ ଜାଣିଥିବାର ଉଲ୍ଲେଖ କରିଥିଲେ ସୁଦ୍ଧା ସାଧାରଣ ଜନମାନସ ଏହାକୁ ଗ୍ରହଣ କଲେନି ।

ରହସ୍ୟ ଦ୍ୱୀପ ପାଇଁ ଏ ଅବଧି ୨୦,୦୦୦ ପୁସ୍ତକ ରଚନା ସରିଥିବାର ଜର୍ମାନ ସାମ୍ବାଦିକ C. W. Ceram ପ୍ରକାଶ କରିଥିଲେ । ସେହି ପୁସ୍ତକ ମାନଙ୍କରୁ ଜଣାଯାଏ ଯେ ଆଟ୍‌ଲାଣ୍ଟିକ୍ ଦ୍ୱୀପରେ ଏକ ଉନ୍ନତ ସଭ୍ୟତା ଥିଲା । ୧୯୬୮ ମସିହାରେ Dr. Valentine ଙ୍କ ଦ୍ୱାରା ଆବିଷ୍କୃତ ପ୍ରାଚୀର ପୁନର୍ବାର ଆଟ୍‌ଲାଣ୍ଟିକ୍ ଅନୁସନ୍ଧିତ୍ସୁ ମନକୁ ଦୃଢ଼ୀଭୂତ କଲା । ଏଥିପୂର୍ବରୁ ୧୯୬୭ ମସିହାରେ ଗ୍ରୀକ୍ ଅଧିବାସୀ Sypridon Morinotrus ସାଣ୍ଟୋରିନ ଆବିଷ୍କାର କରିଥିଲେ । ସେ ଏହାକୁ ୩୫୦୦ ବର୍ଷ ପୂର୍ବେ ଯାଭା ଓ ସୁମାତ୍ରାଠାରେ ଘଟିଥିବା ବିତପାତ୍ ସହ ତୁଳନା କରିଥିଲେ । ଏହାର କାରଣ ଆଗ୍ନେୟଗିରିର ଅଗ୍ନିଉଦ୍‌ଗୀରଣ ବୋଲି ମାରିନୋଟିବ ମତ ଦେଇଥିଲେ ।

ହୃତ ନନ୍ଦନକାନନ ତଥା ପୃଥିବୀର ସର୍ବପ୍ରାଚୀନ ସଭ୍ୟତା ପାଇଁ ଏ ଯାବତ୍ ଐତିହାସିକ, ବୈଜ୍ଞାନିକ ଓ ଭୌଗଳିକବିତ୍‌ମାନେ ଅନେକ ପରୀକ୍ଷା ନିରୀକ୍ଷା କରିସାରିଥିଲେ ସୁଦ୍ଧା ନିଶ୍ଚିହ୍ନ ସଭ୍ୟତା ଏ ଯାବତ ଜନମାନସର ରହସ୍ୟ ଭିତରେ ବୁଡ଼ି ରହିଛି । କିଏ ଜାଣେ କେଉଁଦିନ, କାହାଦ୍ୱାରା ଏହାର ସଠିକ୍ ବିବରଣୀ ମିଳିବ ।



# ଉଡ଼ନ୍ତା ଥାଳିଆ

---

*ସ୍ୱୟଂ ଈଶ୍ୱରଙ୍କ ରଥ କ'ଣ ଉଡ଼ନ୍ତା ଥାଳିଆ ! ଏଇ ରଥରେ କ'ଣ ଈଶ୍ୱର ପୃଥିବୀ ପରିଭ୍ରମଣ କରନ୍ତି.... ସ୍ୱର୍ଗର ପରୀମାନେ ଅବତରଣ କରନ୍ତି ମର୍ତ୍ତ୍ୟ ଧାମରେ !*

*ନା, ଅନ୍ୟ ଗ୍ରହର ଉନ୍ନତ ମଣିଷ ଜାତିର ସେ ଏକ ମହାକାଶ ଯାନ ! ସତରେ ଆମେରିକା କ'ଣ ଅନ୍ୟ ଗ୍ରହାନ୍ତରବାସୀଙ୍କୁ ବନ୍ଦୀ କରି ରଖିଚି ନିଜର ଗୋପନୀୟ କାରା କକ୍ଷରେ ! ଆଉ ସତରେ କ'ଣ ଏଇ ଯାନର ଆରୋହୀ ସେଇ ଅଜ୍ଞାତ ଅଜଣା ଗ୍ରହର ଏକ ରୂପସୀ ସହ ମର୍ତ୍ତ୍ୟର ମଣିଷକୁ ମିଳନ କରାଇ ଆମ ଉପରେ ଚାଲୁ ରଖିଛନ୍ତି ସେମାନଙ୍କ ପରୀକ୍ଷା ନିରୀକ୍ଷା !*

*ତେବେ ସେ ଯାହା ହେଉ ଉଡ଼ନ୍ତା ଥାଳିଆ ସଂପର୍କରେ ସତୁରୀ ହଜାରରୁ ଉର୍ଦ୍ଧ୍ୱ ଚାଞ୍ଚଲ୍ୟକର ବିବରଣୀ ଅଦ୍ୟାବଧି ଆମର ହସ୍ତଗତ ହୋଇଛି । କଂପ୍ୟୁଟର ପ୍ରମାଣ କରିଦେଇଛି ଉଡ଼ନ୍ତା ଥାଳିଆ ଅଛି..... ନିଶ୍ଚୟ ଅଛି.....*

---

ବହୁ ପ୍ରାଚୀନ କାଳରୁ ଉଡ଼ନ୍ତା ଥାଳିଆ (U. F. O.) ଆକାଶରେ ଦେଖାଯାଉଥିଲେ ମଧ୍ୟ ଚଳିତ ଶତାବ୍ଦୀର ବହୁସ୍ଥାନରେ ଉଡ଼ନ୍ତା ଥାଳିଆ ଆକୃତିର ବିଚିତ୍ର ମହାକାଶଯାନ ସଦୃଶ ବସ୍ତୁମାନ ଦେଖାଯାଇଛି । ଏହା ଦେଖାଯିବା ଦିନଠାରୁ ଏ ପର୍ଯ୍ୟନ୍ତ ବୈଜ୍ଞାନିକମାନେ ବହୁ ପରୀକ୍ଷା ନିରୀକ୍ଷା ଚଳାଇ ଆସିଛନ୍ତି । ତଥାପି ଏହା କଣ ଓ କେଉଁଠାରୁ ଆସୁଛି ସଠିକ୍‌ଭାବେ ଜାଣି ହେଉନି । ବିଭିନ୍ନ ଆଲୋଚନା ଓ ସମାଲୋଚନା ପରେ ଉଡ଼ନ୍ତା ଥାଳିଆ ବିଶ୍ୱବାସୀଙ୍କ ମନରେ ସନ୍ଦେହର ଘନକୁହୁଡ଼ି ଢାଙ୍କି ରଖିଛି !

ବୈଜ୍ଞାନିକମାନେ ମତ ଦିଅନ୍ତି ଏହି ଯାନଗୁଡ଼ିକ ଆମ ସୌରଜଗତର କୌଣସି ଗ୍ରହରୁ ଆସୁନାହାନ୍ତି । ଏହି ସୌରଜଗତ ପରେ ଥିବା ଅନ୍ୟାନ୍ୟ ସୌରଜଗତରେ ମନୁଷ୍ୟଠାରୁ ଅଧିକ ବୁଦ୍ଧିମାନ ମନୁଷ୍ୟ ଅଛନ୍ତି । ସେମାନଙ୍କର ବିଜ୍ଞାନ ଖୁବ୍ ଉନ୍ନତମାନର ହୋଇଥିବାରୁ ହୁଏତ ସେମାନେ ପୃଥିବୀ ପରିଭ୍ରମଣ କିମ୍ବା ଆମ ଜୀବଜଗତ ସଂପର୍କେ ବିଭିନ୍ନ ଅନୁଧ୍ୟାନ ନିମନ୍ତେ ଆସୁଛନ୍ତି ।

ଏ ଯାବତ୍ ୧୩୩ଟି ଦେଶର ଲୋକଙ୍କଠାରୁ ଏହି ଉଡ଼ନ୍ତା ଥାଳିଆ ସମ୍ବନ୍ଧରେ ସତୁରୀ ହଜାର ବିବରଣୀ ମିଳିଛି ।

କେତେକ ବୈଜ୍ଞାନିକ ଏ ବିଚିତ୍ର ବସ୍ତୁକୁ ଫ୍ଲେଆର, ପାଣିପାଗ ବେଲୁନ ଓ ରାଡ଼ାର ଯନ୍ତ୍ର ବୋଲି କୁହନ୍ତି । ମାତ୍ର ଏହା ଠିକ୍ ନୁହେଁ କାରଣ ଏହାର ଆକୃତି ବିଭିନ୍ନ ପ୍ରକାରର



କମ୍ପ୍ୟୁଟର ପର୍ଦ୍ଦାରେ ଉଡ଼ନ୍ତା ଥାଳିଆର ଆଲୋକ

ଓ ଏଥିରୁ ବିଭିନ୍ନ ରଙ୍ଗର ଆଲୋକ ନିର୍ଗତ ହେଉଥାଏ । ତେବେ ଅଧିକାଂଶ ଉଡ଼ନ୍ତା ଥାଳିଆ ଚେପ୍‌ଟା ଓ ଗୋଲାକାର । ଦ୍ରୁତଗତିରେ ଆକାଶରେ ବୁଲୁଥିବା ଏହି ବସ୍ତୁ ଗୁଡ଼ିକରୁ ସୁ, ସୁ ଶବ୍ଦ ହେଉଥାଏ । କେତେକ ବସ୍ତୁ ବି ଶବ୍ଦହୀନ । କେତେକ ରାଡ଼ାରରେ ଦେଖାଯାଉଥିବା ବେଳେ କେତେକ ରାଡ଼ାର ପର୍ଦ୍ଦାକୁ ଆସେନି । ଏଗୁଡ଼ିକର ବେଗ ମନୁଷ୍ୟ ନିର୍ମିତ ଯେକୌଣସି ଉଡ଼ନ୍ତା ବସ୍ତୁର ବେଗଠାରୁ ଅଧିକ ।

୧୯୪୭ ମସିହା ଜୁନ୍ ୬ ତାରିଖରେ ଆମେରିକାର ଘରୋଇ ବିମାନ ଚାଳକ କେନେଥ ଆର୍‌ନଲ୍ଡ, ଚେହାଲିସ୍ ଠାରୁ ୟାକିମକୁ ବିମାନରେ ଯାଉଥିବାବେଳେ ୧୪ହଜାର ଫୁଟ୍ ଉଚ୍ଚତା ବିଶିଷ୍ଟ ରେନିଅର ପର୍ବତ ଉପରେ କେତେଗୁଡ଼ିଏ ଉଡ଼ନ୍ତା ବସ୍ତୁ ଦେଖିଲେ । ଥାଳିଆ ଆକୃତିର ଏହି ବସ୍ତୁଗୁଡ଼ିକ ଘଣ୍ଟାକୁ ୧୨୦୦ ମାଇଲ୍ ବେଗରେ ଏକ ଲାଇନରେ ଯାଉଥିଲେ । କେନେଥ ଆର୍‌ନଲ୍ଡ କେତେ ମିନିଟ୍ ପାଇଁ ଏହି ବସ୍ତୁଗୁଡ଼ିକୁ ଅନୁସରଣ କରି ନିଜ ବିମାନ ଚଳାଇଲେ । କିଛି ସମୟ ପରେ ଏହା ଅଦୃଶ୍ୟ ହେଲା । ଆରନଲ୍ଡ ଏହା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶନ ପାଇଁ ଦେବାପରେ ଚାଞ୍ଚଲ୍ୟ ସୃଷ୍ଟି ହେଲା । ତାପରେ ପୃଥିବୀର ବହୁପ୍ରାନ୍ତରେ ଏହି ବସ୍ତୁମାନ ଦେଖାଯାଉଥିବାର ସଂବାଦ ମିଳିଲା ।

ଏହି ସଂବାଦ ସବୁକୁ ନେଇ ୧୯୪୭ ମସିହାରୁ ୧୯୫୨ ମସିହା ପର୍ଯ୍ୟନ୍ତ ଅଚିହ୍ନା ଉଡ଼ନ୍ତା ବସ୍ତୁ ଉପରେ ଆଲୋଚନା ଓ ଗବେଷଣାମାନ ଚାଲିଲା । ଆମେରିକାର ବିମାନ ବାହିନୀ ୧୫ଶହଥର ଆପୋଲ ମହାକାଶଚାରୀମାନଙ୍କ ଠାରୁ ମଧ ମହାକାଶରେ ୩ଥର ଏଭଳି ଉଡ଼ନ୍ତା ଥାଳିଆ ଦେଖିଥିବାର ସଂବାଦ ମିଳିଲା । ଆମେରିକା ସରକାରଙ୍କ ଦ୍ୱାରା କେତେକ ଗ୍ରହାନ୍ତରବାସୀ ବନ୍ଦୀ ହୋଇଥିବାର ଗୋପନୀୟ ଖବର ଏବେ ବି ରହସ୍ୟ ହୋଇ ରହିଚି ଆମ ପାଖରେ ।

ଦ୍ୱିତୀୟ ମହାଯୁଦ୍ଧ ସମୟରେ ୧୯୪୪ ମସିହା ନଭେମ୍ବର ୨୩ତାରିଖ ରାତିରେ



ମେଘଖଣ୍ଡ ପରି ଦେଖାଯାଉଥିବା
ଉଡ଼ନ୍ତା ଥାଳିଆ

ଆମେରିକା ବିମାନ ବାହିନୀର ଲେଫ୍ଟନାଣ୍ଟ ଏଡ୍‌ୱାର୍ଡ଼ ଶତ୍ରୁପକ୍ଷ ବିମାନକୁ ବାଧାଦେବା କାର୍ଯ୍ୟରେ ନିୟୋଜିତ ଥିବାବେଳେ ଆଠ ଦଶଟି କମଳା ରଙ୍ଗର ଗୋଲାକାର ବସ୍ତୁ ଦ୍ରୁତ ଗତିରେ ଉଡ଼ିଯାଉଥିବାର ଦେଖିଲେ । ଏଗୁଡ଼ିକ ବିମାନର ରାଡ଼ାର ପର୍ଦ୍ଦାରେ ଦେଖାଯାଉନଥିଲା । ତେଣୁ ଏଡ୍‌ୱାର୍ଡ଼ ଉଡ଼ନ୍ତା ବସ୍ତୁ ଗୁଡ଼ିକ ବିମାନ ନୁହେଁ ବୋଲି ଜାଣିଲେ ଓ ନିଜ ବିମାନକୁ ଉକ୍ତ ବସ୍ତୁ ଆଡ଼କୁ ଚଳାଇ ନେଲେ । କିଛି ସମୟପରେ ବସ୍ତୁଗୁଡ଼ିକ ଅଦୃଶ୍ୟ ହୋଇଯାଇ ଦୂର ଆକାଶର ଅନ୍ୟ ଏକ ସ୍ଥାନରେ ଉଡ଼ି ବୁଲିଲେ । ଏଡ୍‌ୱାର୍ଡ଼ ପୁନରାୟ ଅନୁଧାବନ କଲେ । ଏଥର ପଦାର୍ଥ ଗୁଡ଼ିକ ତଳକୁ ଖସି ସମ୍ପୂର୍ଣ୍ଣ ଅଦୃଶ୍ୟ ହୋଇଗଲା ।

ଉଡ଼ନ୍ତା ଥାଳିଆର ଇତିହାସ ଅନେକ ପୁରୁଣା । ପୁରାତନ ଯୁଗରେ ଏହାକୁ ଦେଖିଥିବା ଲୋକମାନେ ଭାବିଲେ ଯେ ସ୍ୱୟଂ ଈଶ୍ୱର ତାଙ୍କ ରଥରେ ବସି ପୃଥିବୀ ଭ୍ରମଣ କରୁଛନ୍ତି । ଖ୍ରୀଷ୍ଟଧର୍ମର ପୌରାଣିକ ପୁସ୍ତକ ''ଜେନ୍‌ସିସ'' ରେ ଜାକବ, ପରୀମାନେ ସ୍ୱର୍ଗରୁ ମର୍ତ୍ତ୍ୟବାସୀଙ୍କ ପାଇଁ ଏକ ନିଶୁଣି ଲମ୍ବାଇ ରଖିଥିବାର ଉଲ୍ଲେଖ କରିଛନ୍ତି । କଲମ୍ବସ ମଧ୍ୟ ତାଙ୍କ ଆବିଷ୍କାର ପୁସ୍ତକରେ ଦୂର ଆକାଶରେ ଏକ କ୍ଷୀଣ ଆଲୋକଧାରା ଦେଖିଥିବାର ଉଲ୍ଲେଖ କରିଛନ୍ତି ।

୧୯୪୭ ମସିହାରେ ଆମେରିକାର ପଶ୍ଚିମ ତୀରବର୍ତ୍ତୀ ଟାକେମା ନିକଟରେ ଦୁଇଜଣ ନୌସେନା ପ୍ରାୟ ଦୁଇହଜାର ଫୁଟ ଦୂର ଆକାଶରେ ଗୋଲାକୃତିର ଛଅଗୋଟି ଅଦ୍ଭୁତ ବସ୍ତୁ ଉଡୁଥିବାର ଦେଖିଲେ । ଏଚ.ଏ.ଡ଼ହଲ ଓ ଫ୍ରେଡ୍ ଏଲ୍. କ୍ରେସବେନ ନାମକ ଏହି ଦୁଇ ନୌସେନା ସେଗୁଡ଼ିକୁ ନିରୀକ୍ଷଣ କଲେ । ବସ୍ତୁ ଗୁଡ଼ିକର ନିର୍ମାଣ ଶୈଳୀ ଅଦ୍ଭୁତ ଥିଲା । ପ୍ରତ୍ୟକରୁ ଉଜ୍ଜ୍ୱଳ ଏବଂ ସୁନେଲି ରଙ୍ଗ ଉଦ୍ଭାସିତ ହେଉଥିଲା । ଆକାଶରେ ବିସ୍ଫୋରଣ ଘଟି ଗୋଟିଏ ଧ୍ୱଂସ ହୋଇଗଲା ଓ ଅନ୍ୟ ପାଞ୍ଚୋଟି କେଉଁଆଡ଼େ ଅଦୃଶ୍ୟ ହେଲା । ବିସ୍ଫୋରଣ ଶବ୍ଦରେ ଭୟଭୀତ ହୋଇ ନୌସେନା ନିକଟସ୍ଥ ଗୁମ୍ଫାରେ କିଛି

ସମୟ ଆତ୍ମଗୋପନ କରି ପଦାକୁ ଆସିଲେ । ନିକଟରେ ପଡ଼ିଥିବା ଏକ ଭଗ୍ନ ଧାତବ ଟୁକୁରା ପାଇଲେ । ଏ ଘଟଣା ସଂପର୍କେ ଆମେରିକାବାସୀଙ୍କୁ ସନ୍ଦେଶ ଦେବାକୁ ଯାଇ ଆଶ୍ଚର୍ଯ୍ୟ ହେଲେ ଯେ ତାଙ୍କ ଟ୍ରାନ୍ସମିଟରଟି ଅକାମୀ ହୋଇଯାଇଛି । ପରେ ପରେ ଏହି ଘଟଣା ସମ୍ପର୍କରେ ଆଶ୍ଚର୍ଯ୍ୟଜନକ ଖବର ମିଳିଲା । ନିରୀକ୍ଷଣ ଅନୁସନ୍ଧିତ୍ସୁ ଦଳ ଓ୍ୱାସିଂଟନ୍‌ର ମରେ ଟାପୁରୁ ପ୍ରାୟ କୋଡ଼ିଏ ଟନ୍ ଭଗ୍ନ ଧାତୁଖଣ୍ଡ ଏକତ୍ର କଲେ । ଏଗୁଡ଼ିକୁ ନିଆଯାଇ ଗବେଷଣାଗାରରେ ପରୀକ୍ଷା କଲାପରେ ଜଣାଗଲା ଯେ ପୃଥିବୀରେ ମିଳୁନଥିବା ଧାତୁରେ ଏହା ନିର୍ମିତ ।

୧୯୫୭ ମସିହା ଅକ୍ଟୋବର ୧୫ତାରିଖରେ ବ୍ରାଜିଲରୁ ଏକ ଲୋମହର୍ଷଣକାରୀ ସଂବାଦ ପ୍ରକାଶ ପାଇଲା । ବ୍ରାଜିଲର ଜଣେ କୃଷକ ରାତିରେ ନିଜ କ୍ଷେତରେ କାମ କରୁଥିବା ସମୟରେ ଏକ ବିରାଟ ଅଣ୍ଡାକୃତିର ଉଜ୍ଜ୍ୱଳ ଯାନ ତାଙ୍କ କ୍ଷେତ ନିକଟରେ ଅବତରଣ କଲା । ଯାନଟିର ତିନୋଟି ଲୁହା ଗୋଡ଼ଥିଲା । ଯାନଟି ଭୂପୃଷ୍ଠ ଛୁଇଁବା ପରେ ତାଙ୍କ ଟ୍ରାକରଟି ଆପେ ଆପେ ବନ୍ଦ ହୋଇଗଲା । ସେ ଭୟରେ ଥରିବାକୁ ଲାଗିଲେ । ଯାନ ଭିତରୁ ଚାରିଜଣ ବିଚିତ୍ର ଜୀବ ବାହାରି ତାଙ୍କୁ ଟେକିନେଲେ । ଉକ୍ତ ଜୀବମାନେ ମୁଣ୍ଡରେ ହେଲମେଟ୍ ପିନ୍ଧିଥିଲେ । କୃଷକଙ୍କୁ ଟେକିନେଇ ଯାନ ଭିତରେ ଥିବା ଏକ କୋଠରୀ ଭିତରେ ଉଲଗ୍ନ କରି ଗୋଟିଏ ଖଟ ଉପରେ ଶୁଆଇଦେଲେ । ଗଦିଥିବା ଏହି ଖଟ ଉପରେ ଶୋଇଥିବା ଅବସ୍ଥାରେ ତାଙ୍କ ଦେହରେ ଏକ ତରଳ ପଦାର୍ଥ ମାଲିସ୍ କରି ଦିଆଗଲା । ମାଲିସ୍ ପରେ ଜୀବଗୁଡ଼ିକ ସେଠାରୁ ଅପସରିଗଲେ ଓ ଜଣେ ସୁନ୍ଦରୀ ତରୁଣୀ ଉଲଗ୍ନା ହୋଇ ତାଙ୍କ ନିକଟରେ ପହଞ୍ଚି ଯୌନ ମିଳନରେ ଲିପ୍ତ ହେଲା । ସହବାସ ସମୟରେ ତ୍ରିଭୂଜାକୃତି ମୁଖମଣ୍ଡଳ ସଂପନ୍ନା ସୁଶ୍ରୀ ତରୁଣୀଟି ବିଚିତ୍ର ଶବ୍ଦମାନ ଉଚ୍ଚାରଣ କରୁଥିଲା । ଏହା ଶେଷ ହୁଅନ୍ତେ କୃଷକକୁ ନିଜର ପୋଷାକ ପିନ୍ଧାଇ ଦିଆଯାଇ ବାହାରେ ଛାଡ଼ି ଦିଆଗଲା ଓ ଯାନଟି ଅଦୃଶ୍ୟ ହେଲା ।

୧୯୫୯ ମସିହାରେ ଆମେରିକାର ରେଡ଼ମଣ୍ଡ ବିମାନଘାଟି ନିକଟକୁ ଏକ ବିରାଟ ଉଡ଼ନ୍ତା ଥାଳିଆ ଚାଲି ଆସୁଥିବାର ଦେଖି ଛଅଟି ଏଫ୍-୧୦୨ ଲଢୁଆ ବିମାନ, ଗୋଟିଏ ବି-୪୭ ବୋମାବର୍ଷୀ ବିମାନ ଓ ଗୋଟିଏ ଏଫ୍-୮୯ ଲଢୁଆ ବିମାନ ଏହାକୁ ଜବତ କରିବା ଉଦ୍ଦେଶ୍ୟରେ ଲାଗିଲେ । ବିମାନଗୁଡ଼ିକ କାର୍ଯ୍ୟରତ ଥିବା ସମୟରେ ନିୟନ୍ତ୍ରଣ କେନ୍ଦ୍ରରୁ ଉଡ଼ନ୍ତା ଥାଳିଆକୁ ଦୂରବିକ୍ଷଣ ଯନ୍ତ୍ର ସାହାଯ୍ୟରେ ନିରୀକ୍ଷଣ କରାଯାଇ ବିମାନଗୁଡ଼ିକୁ ବିଭିନ୍ନ ସଂକେତ ପଠାଯାଉଥିବା ଅବସ୍ଥାରେ ଖୁବ୍ ଦ୍ରୁତ ଗତିରେ ଉଡ଼ନ୍ତା ଥାଳିଆଟି ଅନ୍ତର୍ଦ୍ଧାନ ହେଲା । ୧୪ହଜାର ଫୁଟ ଉଚ୍ଚର ମେଘମାଳା ଭିତରେ ଲୁଚିଯାଇଥିବା ଥାଳିଆଟିରୁ ନାଲି, ହଳଦିଆ ଓ ସବୁଜ ରଙ୍ଗର ଆଲୋକ ନିର୍ଗତ

ହେଉଥିଲା । ଏହାକୁ ଗୋଡ଼ାଇବା ପାଇଁ ବିମାନଗୁଡ଼ିକ ଚେଷ୍ଟା କରୁଥିବା ବେଳେ ଫେରିଆସିବା ପାଇଁ ନିୟନ୍ତ୍ରଣ କକ୍ଷ ସଂକେତ ଦେଲା । ବିମାନଚାଳକମାନେ ବିମାନ ଫେରାଇ ଆଣିଲେ ।

୧୯୪୭ ମସିହାରେ ଦକ୍ଷିଣ କୋରିଆ ଉପକୂଳରେ ଆମେରିକାର ସାମରିକ ଘାଟି ନିକଟରେ ରାଡ଼ାରରେ ଅତିକାୟ ଧାତବାକୃତିର ଉଡ଼ନ୍ତା ବସ୍ତୁ ଦୃଶ୍ୟମାନ ହେଲା । ଏହା ଉକ୍ତ ଗୁପ୍ତ ସାମରିକ ଘାଟିଆଡ଼କୁ ଦ୍ରୁତ ଗତିରେ ଆସୁଥବାରୁ ନିୟନ୍ତ୍ରଣ କକ୍ଷ ସର୍ବଶକ୍ତିମାନ 'ହକ୍' କ୍ଷେପଣାସ୍ତ୍ର ନିକ୍ଷେପ କଲେ । ଆଶ୍ଚର୍ଯ୍ୟ ଯେ ଉଡ଼ନ୍ତା ବସ୍ତୁଟି ନିଜେ ଧ୍ୱଂସ ହେବା ପରିବର୍ତ୍ତେ କ୍ଷେପଣାସ୍ତ୍ର ଓ କ୍ଷେପଣାସ୍ତ୍ର ନିକ୍ଷେପ ଯନ୍ତ୍ର ଧ୍ୱଂସ ହେଲା ।

କ୍ୟାପଟେନ ଆଲଭାରିଡ଼ା ଏକ ସାମରିକ ବିମାନରେ ଉଡୁଥିଲାବେଳେ ଗୋଟିଏ ଗୋଲାକାର ଉଜ୍ଜ୍ୱଳବସ୍ତୁ ତାଙ୍କ ବିମାନକୁ ଅନୁସରଣ କଲା । ଦୁଇହଜାର ଫୁଟ ଉଚ୍ଚରେ ଥାଳିଆକୃତି ବସ୍ତୁଟି ତାଙ୍କୁ ଅନୁସରଣ କରୁଥିବାରୁ ଆଲଭା ତାଙ୍କ ବାମନର ଗତି ଓ ଉଚ୍ଚତା ବାରମ୍ୱାର ବଦଳାଇଲେ । ତଥାପି ଅନୁଧାବିତ ବସ୍ତୁଟି ନିଜର ବେଗ ଓ ଉଚ୍ଚତା ସମରୂପରେ ପରିବର୍ତ୍ତନ କରି ଅନୁଧାବନ କଲା । କ୍ରମଶଃ ବିମାନ ଓ ଉଡ଼ନ୍ତା ବସ୍ତୁ ମଧ୍ୟରେ ଦୂରତା ୫ଶହ ଗଜ ରହିଲା । ପ୍ରାୟ ୮ ମିନିଟ୍ ପର୍ଯ୍ୟନ୍ତ ଏହା ଚାଲିବା ପରେ ହଠାତ୍ ଉଡ଼ନ୍ତା ବସ୍ତୁଟି ୯୦ଡିଗ୍ରୀ କୋଣ ଅଙ୍କନ କରି ସୌରମଣ୍ଡଳରେ ଅଦୃଶ୍ୟ ହେଲା ।

କେତେକ ବୁଦ୍ଧିଜୀବୀ ଏହି ଉଡ଼ନ୍ତା ବସ୍ତୁଗୁଡ଼ିକୁ ସୌରଜାହାଜର ଆଖ୍ୟା ଦେଲେ । ବୈଜ୍ଞାନିକ କାଁଜତସେବଙ୍କ ବାହ୍ୟନ୍ତରୀକ୍ଷ ଅନୁସନ୍ଧାନକୁ ନେଇ ଜର୍ମାନ ବିଦ୍ୱାନ ରିଚ୍ ଭୋନ୍ ଦାନିକେନ ୧୯୬୮ ମସିହାରେ ପ୍ରକାଶ କରିଥିବା ''ଚାରିଅଟ୍ ଅଫ୍ ଦି ଗଡ଼'' (Chariot of the God) ଓ ରିଟର୍ଣ୍ଣ ଟୁ ଦି ଷ୍ଟାର (Return to the star) ପୁସ୍ତକରେ ଉଲ୍ଲେଖ କଲେ ଯେ ପିରାମିଡ୍ ଓ ସୁମେରିଆନ ସଭ୍ୟତା ପୃଥିବୀବାସୀଙ୍କ ଦ୍ୱାରା ଗଢ଼ା ନଯାଇ ଗ୍ରହାନ୍ତରବାସୀଙ୍କ ଦ୍ୱାରା ନିର୍ମିତ ହୋଇଛି । ସେମାନେ ଥାଳିଆକୃତି ଉଡ଼ନ୍ତା ଯାନରେ ଧରାପୃଷ୍ଠକୁ ଆସୁଥିଲେ । ଏହାକୁ ପ୍ରମାଣିତ କରିବା ପାଇଁ ଅନେକ ଯୁକ୍ତି ରଖାଯାଇଛି ।

୧୯୭୮ ମସିହାରେ ମେଲବୋର୍ଣ୍ଣଠାରେ ବିମାନଚାଳକ ଫ୍ରେଡ଼ରିକ୍ ଭାଲେଣ୍ଟିନ୍‌ଙ୍କୁ ଜଣାଗଲା ଯେ ତାଙ୍କୁ କେହି ଗୋଡ଼ାଉଛି । ଏହି ସଂବାଦ ସେ ବିମାନ ଟ୍ରାନ୍ସମିଟର ଦ୍ୱାରା ନିୟନ୍ତ୍ରଣ କକ୍ଷକୁ ପଠାଇଲେ । ତାଙ୍କଠାରୁ ମିଳିଥିବା ସଂବାଦ ''କୌଣସି ଏକ ବସ୍ତୁ ମୋ ବିମାନ ଚାରିପଟେ ଘୁରି ବୁଲୁଛି । ଏହା ଆଦୌ ବିମାନ ନୁହେଁ । ଏହା ହେଉଛି.........'' ତାପରେ ଫ୍ରେଡ଼୍ରିକଙ୍କ ବିମାନରୁ ଆଉକିଛି ଶୁଭିଲାନି । ନିୟନ୍ତ୍ରଣ କକ୍ଷ ଅନୁମାନ କଲା ଯେ ବିମାନଟି ଧକ୍କାଖାଇ ଭୂମଧ୍ୟ ସାଗରରେ ନିଖୋଜ



ଉଡନ୍ତାଥାଳିଆ ସଦୃଶ ଆମେରିକା ତିଆରି ଏକ ଯାନ

ହୋଇଛି । ଅନ୍ୟପକ୍ଷରେ ନିଉଜିଲ୍ୟାଣ୍ଡରୁ ଅନେକ ବିସ୍ମୟକର ଦ୍ରବ୍ୟମାନ ମିଳିଲା ।

ସମସ୍ତ ଘଟଣାକୁ ମୂଳକରି ଏକ ଚଳଚ୍ଚିତ୍ର ନିର୍ମିତ ହେଲା ଓ ଆମେରିକାର ନୌବାହିନୀର ଚକ୍ଷୁ ବିଶେଷଜ୍ଞ ଡାଃ ବ୍ରୁସ୍ ମାକାବି ଏ ବିଷୟରେ ନିଜର ଗବେଷଣା ପରେ ପ୍ରକାଶ କଲେ ଯେ ପେଣ୍ଡୁଲିୟମ୍ ପରି ଅନେକ ଚିତ୍ତାକର୍ଷକ ଉଡ଼ନ୍ତା ଦ୍ରବ୍ୟମାନ ଅଛି । ଏହା ଆକାଶରେ ଯିବା ଆସିବା କରୁଛନ୍ତି । ନିଜ ନିବନ୍ଧରେ ମାକବି କହିଲେ ଯେ ଏକଲକ୍ଷ ୱାଟ ଶକ୍ତି ସଂପନ୍ନ ବିଜୁଳିବତୀଂପରି ଆଲୋକ ବିକିରଣ କରି ଘଣ୍ଟାକୁ ତିନିହଜାର ମାଇଲ ବେଗରେ ପ୍ରତ୍ୟକଙ୍କ ମଧ୍ୟରେ ଷାଠିଏରୁ ଶହେଫୁଟ ବ୍ୟବଧାନ ରଖି ସୌର ମଣ୍ଡଳରେ ଏହି ବସ୍ତୁମାନ ଘୂରିବୁଲେ ।

ଉଡନ୍ତା ଥାଳିଆ ସଂପର୍କେ ବହୁଳ ଆଲୋଚନା ପରେ ଆମେରିକା ସରକାର ଏହାର ସର୍ବଶେଷ ତଦନ୍ତ ନିମନ୍ତେ ମହାକାଶଚାରୀ ଡଃ. ଜେ. ଅଲେନ୍. ହ୍ୟାକଙ୍କ ଅଧ୍ୟକ୍ଷତାରେ 'ବ୍ଲୁ ବୁକ୍' ନାମକ ଏକ କମିଟି ଗଠନ କଲେ । ଏହି କମିଟି ପରବର୍ତ୍ତୀ ସମୟରେ ପରୀକ୍ଷଣ କେନ୍ଦ୍ରରେ ରୂପାନ୍ତରିତ ହେଲା । ଉକ୍ତ ପରୀକ୍ଷଣ କେନ୍ଦ୍ର ଉଡ଼ନ୍ତା ଥାଳିଆର ସ୍ଥିତି ସଂପର୍କେ ୧୯୬୬ ମସିହା ଅପ୍ରେଲ ୧୭ତାରିଖ ଘଟଣା ଉପସ୍ଥାପିତ କଲେ । ଏହିଦିନ ଡେଲସ୍ପାଉସ୍ ଓ ଅନ୍ୟ କେତେକ ଏକ ରାସ୍ତାକଡ଼ରେ ଛିଡ଼ାହୋଇ କୌଣସି ନିଷିଦ୍ଧ କାର୍ ସଂପର୍କେ ଅନୁସନ୍ଧାନ କରୁଥିବା ସମୟରେ ତାଙ୍କ ଠାରୁ ପ୍ରାୟ ୭୦ମାଇଲ ଉଚ୍ଚରେ ଘଣ୍ଟାକୁ ୧୦୫ମାଇଲ ବେଗରେ ଉଡ଼ନ୍ତା ଯାନଟିଏ ଆକାଶ ମଣ୍ଡଳରେ ଯାଉଥିବାର ଦେଖିଲେ । ଏହାର ରୂପ ଓ ଗଠନ ଶୈଳୀ ମନୁଷ୍ୟାକୃତି କୌଣସି ଯାନ ସହିତ ସମାନ ନଥିଲା ।

୧୯୭୦ ମସିହାରେ ଇଥୋପିଆର ଆଉ ଏକ ଘଟଣାରେ ନାଲି ବଲ୍ ଆକୃତିର ଏକ ଅଚିହ୍ନା ଉଡ଼ନ୍ତା ବସ୍ତୁ ହଠାତ୍ ଉଡ଼ାଜାହାଜର ଶବ୍ଦ କରି ସେ ଅଂଚଳରେ ଘୂରିବୁଲିଲା । ଏହା ଅନେକ ଘର, ପଥର ବ୍ରିଜ୍ ଓ ଗଛ ବୃକ୍ଷ ଭାଙ୍ଗି ଚାଲିଥିଲେ ବି ଏଥିରେ ଅଗ୍ନି ସଂଯୋଗ ହେଲାନି । ୧୯୭୨ ମସିହାରେ ନାମ୍ବି ଫାଜୋରାରୁ ଅନେକ ଆଶ୍ଚର୍ଯ୍ୟଜନକ ଦ୍ରବ୍ୟମାନ ମିଳିଲା । ଉକ୍ତ ଅଚିହ୍ନା ଉଡନ୍ତା ବସ୍ତୁ ଯୋଗୁଁ ଅନେକ କ୍ଷୟ କ୍ଷତିର ବିବରଣୀ ପରୀକ୍ଷଣ କେନ୍ଦ୍ରଟିର ହସ୍ତଗତ ହେଲା ।

ଉପରୋକ୍ତ ଘଟଣା ଦୁଇଟି ବ୍ୟତୀତ ୩ୟ ଘଟଣାଟି ସଂପୂର୍ଣ୍ଣ ନିଆରା । ଏହି ତଥ୍ୟ ଅନୁଯାୟୀ ଉଡ଼ନ୍ତା ଥାଳିଆରେ ଗ୍ରହାନ୍ତରବାସୀ ଭୂପୃଷ୍ଠରେ ଓହ୍ଲାଇ ଖ୍ରୀଷ୍ଟଧର୍ମର ପ୍ରଶାସକ, ଗୃହିଣୀ, ଡାକ୍ତର ଓ କୃଷକମାନଙ୍କୁ କିଛି ସମୟ ଉଡ଼ାଇ ନେଇ ବିଭିନ୍ନ କଥାବାର୍ତ୍ତା କରିବା ସଂଗେ ସଂଗେ ପରୀକ୍ଷା ନିରୀକ୍ଷା କରିଛନ୍ତି । ମାତ୍ର ପରବର୍ତ୍ତୀ ଅନୁସନ୍ଧାନ ପାଇଁ ଏତେ ଟିକିଏ ବି ପ୍ରମାଣ ଛାଡ଼ି ଯାଇନାହାନ୍ତି ।

ଉଡ଼ନ୍ତା ଥାଳିଆର ରହସ୍ୟ ବିଶ୍ୱବାସୀ ବିଶେଷ ଭାବରେ ଫ୍ରାନ୍ସ ଓ ଆମେରିକାବାସୀଙ୍କ ମନରେ ଅନେକ ପ୍ରଭାବ ବିସ୍ତାର କରିବା ସହ ଆଲୋଡ଼ନ ସୃଷ୍ଟି କଲା । ଏହାର ସ୍ଥିତି ସଂପର୍କେ ଅନେକ ଆଲୋଡ଼ନ ସୃଷ୍ଟି ହେଲା । ବିଜ୍ଞାନ ଓ ବୈଜ୍ଞାନିକ ଏହାର ସ୍ଥିତି ବର୍ଣ୍ଣନା କରିବାରେ ବ୍ୟର୍ଥ ହେଲେ । କେତେକ କହିଲେ ଦେଖଣାହାରୀର ଏହା ମାନସିକ ଭ୍ରମ । ୧୯୭୮ ମସିହାରେ ଆମେରିକା ଅଧିବାସୀ ଉଡ଼ନ୍ତା ଥାଳିଆର ସ୍ଥିତିକୁ ଦୃଢ଼ଭାବେ ସ୍ୱୀକାର କଲାବେଳେ ଓ ବୈଜ୍ଞାନିକମାନେ ଅନ୍ୟ ସୌରମଣ୍ଡଳର ସ୍ଥିତିକୁ ମାନି ନେଲାବେଳେ ଅଚିହ୍ନା ଉଡ଼ନ୍ତା ଦ୍ରବ୍ୟକୁ ଏକ କାଳ୍ପନିକ ଦୃଶ୍ୟର ଆଖ୍ୟା ଦେଲେ ।

୧୯୭୮ ମସିହାରେ ଫ୍ରାନ୍ସ ସରକାର ଜଣେ ମନୋବିଜ୍ଞାନୀଙ୍କ ସହ ଅନ୍ୟ ଚାରିଜଣଙ୍କୁ ନେଇ ଏକ କମିଟି ଗଠନକଲେ । କମିଟିର ସଭ୍ୟମାନେ ଉଡ଼ନ୍ତା ଥାଳିଆ ଦେଖିଥିବା ୧୧ଜଣଙ୍କୁ ଭେଟି ମତ ଦେଲେ ଯେ କୌଣସି ବସ୍ତୁ ଉଡ଼ି ବୁଲୁଥିବା ପରି ଆକାଶରେ ଦୃଶ୍ୟମାନ ହେଉଥିଲ ବି ଏହାର ସ୍ଥିତି ସମ୍ବନ୍ଧରେ ଦୃଢ଼ଭାବେ କିଛି କୁହାଯାଇପାରିବନି । ଯୁକ୍ତରାଷ୍ଟ୍ରରେ ଏଡ଼ୱାର୍ଡ଼ କମିଟି ମଧ୍ୟ ଏହି ବସ୍ତୁ ସମ୍ପର୍କେ ବିଜ୍ଞାନ ସମ୍ମତ ମତାମତ ପ୍ରକାଶ କଲେ ।

''ପାସପୋର୍ଟ ଟୁ ମାଗେନିଆ'' ପୁସ୍ତକ ରଚନା କରି ଫ୍ରେଞ୍ଚ୍ ଅନୁସନ୍ଧାନକାରୀ, ଜ୍ୟାକସ ଭାଲି ଈଶ୍ୱର ଦର୍ଶନ ସହ ଉଡ଼ନ୍ତା ଥାଳିଆର ଦୃଶ୍ୟକୁ ସମାନ କରିଛନ୍ତି । ସେ କିନ୍ତୁ ଉକ୍ତ ପୁସ୍ତକରେ ଏହାର ଆଗମନ ଅନ୍ୟ ସୌରଜଗତରୁ ବୋଲି ସ୍ପଷ୍ଟ କରିଛନ୍ତି ।

ତଥାପି ଉଡ଼ନ୍ତା ଥାଳିଆ ସଂପର୍କରେ ସଠିକ୍ ଉତ୍ତର ଆମର ହସ୍ତଗତ ହୋଇନି ଏଯାଏ । ଏଥିପାଇଁ ଆମକୁ ଅପେକ୍ଷା କରିବାକୁ ପଡ଼ିବ ଆଉ କିଛି ବର୍ଷ ।



# ମୃତ ଶରୀରର ରହସ୍ୟ

---

*ସତରେ କ'ଣ ପିରାମିଡ୍ ଭିତରୁ ବାହାରକୁ ବାହାରି ଆସେ ତୁତନଖାମେନ୍‌ଙ୍କ ମୃତ ଶରୀର ! ରାତିରେ ଘୁରିବୁଲେ ତାଙ୍କ ଆତ୍ମା ! ମାରି ପକାଏ କ'ଣ ପିରାମିଡ୍ ପାଖରେ ଯାହାକୁ ଦେଖେ ତାକୁ !*

---

ମଣିଷ ମରଣଶୀଳ ଜାଣି ସୁଦ୍ଧା ଅହରହ ସଂଗ୍ରାମ କରିଥାଏ, ନିଜେ ବଂଚିବ, ପରିବାର ଲୋକଙ୍କର ଭରଣପୋଷଣ କରିବ । ଉତ୍ତର ଦାୟାଦଙ୍କ ପାଇଁ ସଂପତ୍ତି ଠୁଳ କରିବ । ଧନୀରୁ ଧନୀ ହେବ । ମାତ୍ର ମଲାବେଳକୁ ସବୁ ଛାଡ଼ି ଦେଇଯାଏ । ଏମିତିକି ତା ଦେହରେ ପିନ୍ଧିଥିବା ଭଲ ଲୁଗା ଖଣ୍ଡିକୁ ପାଲଟାଇ ରଖନ୍ତି ଜ୍ଞାତି ସ୍ୱଜନମାନେ । ମୃତ ଶରୀରକୁ କେହି ପୋତି ଦିଅନ୍ତି ଓ କେହି ପୋଡ଼ି ଦିଅନ୍ତି— ନିଜର ଧର୍ମ ବିଶ୍ୱାସ ଅନୁଯାୟୀ ।

ଇଜିପ୍ଟ ଅଧିବାସୀ ଉପରୋକ୍ତ ସମସ୍ତ ପଦ୍ଧତିକୁ ଉଲଂଘନ କରିଛନ୍ତି । ଆଜି ନୁହେଁ କେତେ ହଜାର ବର୍ଷ ତଳୁ ନିଜ ପରିବାରରୁ କେହି ମଲେ ତା ମୃତ ଶରୀରକୁ କଫିନ୍‌ରେ ପୂରାଇ ସୁରକ୍ଷିତ କରି ରଖନ୍ତି । କଫିନଟିକୁ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରଖି ପଥର ଓ କାଠରେ ଏକ ସ୍ମୃତି ସ୍ତମ୍ଭ ନିର୍ମାଣ କରି ରଖନ୍ତି । ସ୍ମୃତି ସ୍ତମ୍ଭ ଗୁଡ଼ିକ କେବଳ ପିରାମିଡ଼ ଭାବେ ପରିଚିତ ନୁହେଁ ସପ୍ତାଶ୍ଚର୍ଯ୍ୟ ଭିତରୁ ଅନ୍ୟତମ । ପିରାମିଡ଼ର ଉଚ୍ଚତା ଓ କାରୁକାର୍ଯ୍ୟ ମୃତ ଲୋକର ପରିବାରବର୍ଗର ଆର୍ଥିକ ଅବସ୍ଥା ଉପରେ ନିର୍ଭର କରିଥାଏ ।

ଇତିହାସ ପ୍ରସିଦ୍ଧ ଇଜିପ୍ଟର ପିରାମିଡ୍ ଗୁଡ଼ିକର ସୌନ୍ଦର୍ଯ୍ୟ ଦର୍ଶକଙ୍କୁ ଆକୃଷ୍ଟ କରୁଥିଲା ବେଳେ ମୃତ ଶରୀରକୁ ସୁରକ୍ଷିତ ରଖାଯିବାର କାରଣ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥାଏ । କେବଳ ମୃତ ଶରୀରଟିକୁ କଫିନ୍ ଭିତରେ ରଖି ତା ଉପରେ ପିରାମିଡ୍‌ଟିଏ ତିଆରି କରି ଜ୍ଞାତି ସ୍ୱଜନମାନେ ନୀରବ ରହିନାହାନ୍ତି । ମଲାଲୋକଟିର କଫିନ ଭିତରେ ସ୍ୱାଦୁପୂର୍ଣ୍ଣ ଖାଦ୍ୟ ସାଙ୍ଗକୁ ହୀରା, ମୋତି ଓ ମାଣିକ ଆଦି ମୂଲ୍ୟବାନ ପଥରର ଅଳଙ୍କାର ମାନ ରଖିଛନ୍ତି ।

ଇଜିପ୍ଟ ଲୋକମାନଙ୍କ କଥାରୁ ଜଣାଯାଏ ଯେ ମରୁଥିବା ଲୋକଟି ରାତିରେ ପୁଣି ବଂଚିଉଠେ । ନିଜର ପୋଷାକ ଓ ଅଳଙ୍କାରମାନ ପରିଧାନ କରି ପିରାମିଡ୍ ପାଖରେ

ବୁଲାଚାଲା କରେ । ଏହି ଲୋକ କଥାର ସତ୍ୟାସତ୍ୟ ସଂପର୍କେ କୌଣସି ପ୍ରମାଣ ନଥିଲେ ବି ପିରାମିଡ୍ ଭିତରେ ଥିବା କଫିନରୁ ନିର୍ଗତ ମୃତଶରୀର ଓ ତତ୍‌ସଂଲଗ୍ନ ଅଳଙ୍କାରପତ୍ର ସମଗ୍ର ପୃଥିବୀବାସୀଙ୍କ ମନରେ ଆଶ୍ଚର୍ଯ୍ୟ ତଥା ସଂଦେହର ଯେଉଁ ପ୍ରଲେପ ଦେଇଛି ତାହାର ପ୍ରକୃତ କାରଣ ଖୋଜି କେହିବି ଏ ଅବଧି କୃତକାର୍ଯ୍ୟ ହୋଇନାହାନ୍ତି । ଉନ୍ନତ ଦେଶର ଐତିହାସିକ, ବୈଜ୍ଞାନିକ ଓ ପ୍ରତ୍ନତତ୍ତ୍ୱବିତ୍ ନିଜ ନିଜର ଗବେଷଣା ଅବ୍ୟାହତ ରଖିଛନ୍ତି ।

ତିନିହଜାର ବର୍ଷ ପୂର୍ବେ ମାତ୍ର ୧୮ବର୍ଷ ବୟସରେ ମୃତ୍ୟୁବରଣ କରିଥିବା ତୁତନଖାମେନଙ୍କ ମର ଶରୀରକୁ ଖୁବ୍ ଯତ୍ନ ସହକାରେ ଅକଳନ ଧନରତ୍ନ ସହ ରାମିଶେଷଠାରେ ଥିବା ପିରାମିଡ୍‌ରେ ରଖାଯାଇଥିଲା । ପ୍ରଥମେ ଇଜିପ୍ଟ ଅଧିବାସୀଙ୍କର ବିଶ୍ୱାସଥିଲା ଯେ ପିରାମିଡ୍‌ରୁ ଏହି ଧନ ସଂପତ୍ତି ଉଦ୍ଧାର କରିବାବେଳେ ଲୋକଟି ନିଶ୍ଚୟ ମୃତ୍ୟୁ ବରଣ କରିବ । ଯୁବରାଜ ତୁତନଖାମେନଙ୍କ ଅଭିଶାପ ହେଉ କିମ୍ବା ଅବରୁଦ୍ଧ ପିରାମିଡ଼ରୁ ନିର୍ଗତ ଅବରୁଦ୍ଧ ବାୟୁର କୌଣସି ରାସାୟନିକ ପରିବର୍ତ୍ତନ ଯୋଗୁଁ ହେଉ କୋଡ଼ିଏ ଜଣ ଗବେଷକଙ୍କ ମୃତ୍ୟୁପରେ ୧୮୯୨ ମସିହାରେ ଆମେରିକାରେ ଦୁଇ ପ୍ରତ୍ନତତ୍ତ୍ୱବିତ୍ କର୍‌ଟର ଓ କର୍‌ନଖାନ ଇଜିପ୍ଟର ସୁରକ୍ଷିତ ଶବଦେହ ସଂପର୍କେ ନିଜର ଗବେଷଣା ଆରମ୍ଭ କଲେ । ୧୮୯୨ରୁ ୧୯୧୪ ପର୍ଯ୍ୟନ୍ତ କବରଖାନାରୁ ମୃତ ଶରୀରଟିକୁ ବାହାର କରିବା ପାଇଁ ଖନନ କାର୍ଯ୍ୟ ଅବ୍ୟାହତ ରହିଲା । ପ୍ରଥମ ବିଶ୍ୱଯୁଦ୍ଧ ପାଇଁ ଗବେଷଣା କାର୍ଯ୍ୟ ବନ୍ଦ ରହିଲା ପରେ ନିରୁତ୍ସାହିତ ପ୍ରତ୍ନତତ୍ତ୍ୱବିତ୍ ଏକ ଭୂତଳ ପ୍ରାସାଦର ପାହାଚ ପାଇଲେ । ବାରୋଟି ପାହାଚ ପରେ ସେ ଏକ ଦ୍ୱାର ନିକଟରେ ପହଁଚିଲେ । ଏହି ଦ୍ୱାରକୁ ଭାଙ୍ଗିବାପରେ ତୁତନଖାମେନଙ୍କ ଅବଲୁପ୍ତ ଧନଭଣ୍ଡାରର ପ୍ରକୃତ ରୂପ ଦେଖିବାକୁ ପାଇବା ସଙ୍ଗେ ସଙ୍ଗେ ତୁତନଖାମେନଙ୍କ ସୁରକ୍ଷିତ ମରଶରୀରଟି ମିଳିଲା ।

ସୁବର୍ଣ୍ଣ ନିର୍ମିତ ଅନେକ ଅଳଙ୍କାର ସହ ବିଭିନ୍ନ ଦେବାଦେବୀଙ୍କର ପ୍ରତିଛବିମାନଙ୍କ ଗହଣରେ ମୃତ ଶରୀରଟି ରଖାଯାଇଥିଲା । ଅଳଙ୍କାର ଗୁଡ଼ିକରେ ଅନେକ କାରୁକାର୍ଯ୍ୟ କରାଯାଇଥିଲା । ସୂକ୍ଷ୍ମ କାରୁକାର୍ଯ୍ୟମୟ ଅଳଙ୍କାରରୁ କଳା ସମୃଦ୍ଧ ମିଶରର ପରଚୟ ମିଳେ । ତୁତନଖାମେନଙ୍କ ମୃତ୍ୟୁର ୩୦୦୦ ବର୍ଷ ପରେ ମିଳିଥିବା ମରଶରୀରର କିଛିଟା ଅବକ୍ଷୟ ହୋଇଥିଲେ ବି ଏହା ସଦ୍ୟ ମୃତ ବ୍ୟକ୍ତିର ଶରୀର ପରି ଦିଶୁଥିଲା । ଏକ ମୃତ ଶରୀରକୁ ଏତେ ଦିନ ପର୍ଯ୍ୟନ୍ତ ସୁରକ୍ଷିତ ରଖିବା ପାଇଁ ତତ୍‌କାଳୀନ ଇଜିପ୍ଟ ଅଧିବାସୀ ଯେ କେଉଁ ଉପାୟ ଅବଲମ୍ବନ କରୁଥିଲେ ତାହା ଜାଣିବା ସମ୍ଭବ ହେଉନଥିଲେ ବି ଛୋଟ ଠାରୁ ବଡ଼ କ୍ରମରେ ଚାରୋଟି କଫିନକୁ ଏକାଠି ରଖି ଶବଟିକୁ ସୁରକ୍ଷିତ ରଖିବାର

ପ୍ରକୃତ ଜ୍ଞାନ କୌଶଳ ଏ ଅବଧି ଜଣାଯାଇନି ।


ମମିରେ ଥିବା ତୁତାନଖାମେନ୍‌ଙ୍କ ମୁଖ

ପ୍ରତ୍ନତତ୍ତ୍ୱବିତ୍ ଲୌହ ବିଛଣା ଓ ଲୌହ ତକିଆ ଉପରୁ ତୁତନଖାମେନଙ୍କ ମରଶରୀରକୁ ପାଇଥିଲେ । ମରଶରୀରଟି ରଖାଯାଇଥିବା ତକିଆ ଉପରେ, ମିଶର ଦେଶର ସର୍ବୋତ୍କୃଷ୍ଟ ତୈଳଚିତ୍ର ମିଶରର କଳାତ୍ମକ ଅଭିବୃଦ୍ଧିର ମୂକସାକ୍ଷୀଟିଏ ପରି ଅକ୍ଷୁଣ୍ଣ ଅବସ୍ଥାରେ ଥିଲା । ସବୁଜ ଗ୍ଲାସ, ନିଳମ ଓ ହୀରସହ ତୁତାନଖାମେନଙ୍କ ଡାହାଣହାତ ଆଙ୍ଗୁଠିରେ ମୂଲ୍ୟବାନ ପଥରର ୫ଟି ମୁଦି ସହ ବାଁ ହାତ ଆଙ୍ଗୁଠିରେ ୮ଟି ସୁନା ମୁଦି ଥିଲା । ଡାହାଣ ହାତ ଗଣ୍ଠିରେ ଏକ ସୁନା ଚେନ୍ ବନ୍ଧାଯାଇ ଖଣ୍ଡାଟିଏ ଝୁଲାଇ ରଖାଯାଇଥିଲା । ହାତୀ ଦାନ୍ତରେ ନିର୍ମିତ ଖଣ୍ଡାବେଣ୍ଟରେ ଅନେକ ମୂଲ୍ୟବାନ ପଥର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଦିଆଯାଇଥିଲା । ଏତଦ୍‌ବ୍ୟତୀତ କଫିନ ଭିତରୁ ଅନେକ ମୂଲ୍ୟବାନ ବାସନ, ବ୍ୟବହୃତ ଜନିତ ପଦାର୍ଥ ଉପଢୌକନ ଆକରରେ ଦିଆଯାଇଥିବା ମୂଲ୍ୟବାନ ପଦାର୍ଥମାନ ମିଳିଲା ।

୧୪୩ପ୍ରକାର ଅଳଙ୍କାରରେ ଭୂଷିତ ଥିବା ମରଶରୀରରେ ୧୫୦ପ୍ରକାର ଚିତ୍ରର ଛାପ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ଅଙ୍କିତ ହୋଇଥିଲା । ସୁସ୍ପଷ୍ଟ ଚିତ୍ରଗୁଡ଼ିକ ମିଶର ଅଧିବାସୀଙ୍କ କଳା ନୈପୁଣ୍ୟତାର ପରିଚୟ ଦେବା ସଙ୍ଗେ ସଙ୍ଗେ ତତ୍କାଳୀନ ମିଶର ସଭ୍ୟତାର ପରିଚୟ ପ୍ରଦାନ କରୁଥିଲା । ଶାରୀରିକ ଚିତ୍ରଗୁଡ଼ିକ ବିଭିନ୍ନ ଦେବାଦେବୀଙ୍କର ଥିଲା । ଛାତି ଉପରେ ଅଙ୍କିତ ସ୍ରାବ ଚିତ୍ର ଦ୍ୱାରା ପିରାମିଡ଼ ଭିତରେ ମୃତ ବ୍ୟକ୍ତିକୁ ବଂଚାଇ ରଖିବା ନିମନ୍ତେ ଠାକୁରଙ୍କୁ ପ୍ରାର୍ଥନା କରାଯିବା ପାଇଁ ଉଦ୍ଦିଷ୍ଟ ଥିଲା ।

ବହୁ ନିରୀକ୍ଷଣ ପରେ ଐତିହାସିକମାନେ କେବଳ ତିନୋଟି ଚିତ୍ରକୁ ଚିହ୍ନଟ କଲେ । ଇଂରାଜୀରେ Eyes of Horus, Buckle of Isis ଓ Scarab ନାମିତ ଚିତ୍ରଗୁଡ଼ିକ କେବଳ ଈଶ୍ୱରଙ୍କ ପ୍ରତୀକ ଥିଲା । ମୃତ ବ୍ୟକ୍ତିର ବିଗତ ଜୀବନଚର୍ଯ୍ୟାର ସମସ୍ତ କର୍ମକୁ ସୁଦୃଷ୍ଟିରେ ଦେଖି ମୃତବ୍ୟକ୍ତିକୁ କୌଣସି ଦଣ୍ଡ ନଦେବା ପାଇଁ Horus ଓ Isis ଚିତ୍ର ଦୁଇଟି ଉଦ୍ଦିଷ୍ଟ ଥିଲା । ସର୍ବୋପରି ଅଙ୍କିତ ଚିତ୍ରଗୁଡ଼ିକରୁ ମୃତବ୍ୟକ୍ତିର ପିରାମିଡ଼ ଭିତରେ ଏକ ନିଷ୍କଳଙ୍କ ସୁଷ୍ଠୁ ଜୀବନଯାପନର ପରିକଳ୍ପନା କରାଯାଇଥିଲା ।

ବିସ୍ମୟର ଗନ୍ତାଘର ପିରାମିଡ଼ରୁ ଉଦ୍ଧୃତ ମରଶରୀରରୁ ଅତରର ବାସ୍ନା ନିର୍ଗତ



ନବରତ୍ନ ଉଦ୍ଧାର କରାଯାଇଥିବା ସୁନାର ଚେୟାର

ହେଉଥିଲେ ବି ମରଶରୀରର କିୟଦଂଶର ଅବକ୍ଷୟ ସମସ୍ତଙ୍କୁ ବିସ୍ମୟାବିଭୂତ କରିଛି । ତୁତନଖାମେନଙ୍କ ମୃତ୍ୟୁର ଯଥେଷ୍ଟ ପୂର୍ବରୁ ରଖାଯାଇଥିବା ମରଶରୀରର କୌଣସି ଅବକ୍ଷୟ ଘଟି ନଥିଲେ ବି ଏହି ଶରୀରଟିର ଅବକ୍ଷୟ ସଂପର୍କେ କେତେକ ମେଧାବୀ ମତ ଦେଲେ ଯେ ମରଶରୀର ଉପରେ ମାଲିସ୍ କରାଯାଇଥିବା ତେଲ ଯୋଗୁଁ ହିଁ ଅବକ୍ଷୟ ଘଟିଛି । ମାଲିସ୍ ତେଲ କୌଣସି କାରଣରୁ ଚମଡ଼ା ଭିତରକୁ ପଶିଯାଇଛି । ମାତ୍ର ଏହି ମତ ସହ ବୈଜ୍ଞାନିକମାନେ ଏକମତ ହୋଇ ପାରିନାହାନ୍ତି ।

ଅକଳନ ଧନ ସଂପତ୍ତି ସହ, ମୂଲ୍ୟବାନ ପ୍ରସ୍ତର ପ୍ରତିମୂର୍ତ୍ତି ଓ ଏକ ସୁସଜ୍ଜିତ ସୁବର୍ଣ୍ଣ ସିଂହାସନ ଉଦ୍ଧାର କରାଯାଇଛି । ସୂକ୍ଷ୍ମ କାରୁକାର୍ଯ୍ୟମୟ ସିଂହାସନ ସହ ତୁତାନଖାମେନଙ୍କ ବାଗ୍‌ଦତ୍ତାଙ୍କ ପ୍ରତିମୂର୍ତ୍ତି ମଧ୍ୟ ମିଳିଛି । ହୀରା, ନୀଳା, ମୋତି ମାଣିକ ଖଚିତ ସିଂହାସନଟି ଅନେକ ଦେଶର କଳାସ୍ଥାପତ୍ୟକୁ ଲୁଣ୍ଠିତ କରୁଥିଲେ ବି ମରଶରୀର ସହ କୋଟି କୋଟି ଟଙ୍କାର ଅଳଙ୍କାର ଓ ଆସବାସକୁ ମାଟି ତଳେ ପୋତି ରଖିବାର କାରଣ ସମସ୍ତଙ୍କୁ ବିସ୍ମୟାଭିଭୂତ କରୁଥିବାବେଳେ ପିରାମିଡ଼ର କାରୁକାର୍ଯ୍ୟ ଭ୍ରମଣକାରୀଙ୍କୁ ମୁଗ୍ଧ କରିଛି ।

ଉଷ୍ମ ମରୁଭୂମି ଅନ୍ତର୍ଗତ ନୀଳନଦୀ ଉପତ୍ୟକାରେ ପ୍ରାଚୀନ ମିଶରର ଶିକ୍ଷା, ସଂସ୍କୃତି ଓ ସଭ୍ୟତାକୁ ମୁଣ୍ଡେଇ ଛିଡ଼ା ହୋଇଥିବା ପିରାମିଡ୍, ସୁରକ୍ଷିତ ଶବ ଓ ଏଥିସହ ଥିବା ଅକଳନ ଧନସଂପତ୍ତି ଆଜି ପୃଥିବୀବାସୀଙ୍କର ବିସ୍ମୟର ଗନ୍ତାଘର । ମାତ୍ର ଏହାର ନିର୍ମାଣ କୌଶଳ ଓ ମୃତ ଶରୀର ସହ ଅନେକ ଧନ ସମ୍ପତ୍ତି ପୋତି ରଖିବାର ପ୍ରକୃତ କାରଣ ଏ ପର୍ଯ୍ୟନ୍ତ ଜଣାଯାଇନି । ବୈଜ୍ଞାନିକ, ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍‌ମାନେ ଚେଷ୍ଟିତ ।



# ପୂର୍ବ ଜନ୍ମ

*ପୁନର୍ଜନ୍ମ କ'ଣ ନିଶ୍ଚୟ ଅଛି ! ସତରେ କ'ଣ ଜୀବନରେ ସତ୍ୟ ଓ ନ୍ୟାୟକୁ ସମ୍ପୂର୍ଣ୍ଣ ପାଳନ କରୁଥିବା ବ୍ୟକ୍ତି ମୃତ୍ୟୁ ପରେ ଦାର୍ଶନିକ ଓ କଳାକାର ହୋଇ ଜନ୍ମ ନିଏ ! ଅର୍ଦ୍ଧେକ ପାଳନ କରୁଥିବା ବ୍ୟକ୍ତି ହୁଏ ରାଜା ! ଏକ ତୃତୀୟାଂଶ ପାଳନ କରୁଥିବା ବ୍ୟକ୍ତି ବ୍ୟବସାୟୀ । ଏକ ଚତୁର୍ଥାଂଶ ପାଳନ କରୁଥିବା ବ୍ୟକ୍ତି ଡାକ୍ତର ବା ଖେଳୁଆଡ଼ ହୋଇ ଜନ୍ମ ନିଅନ୍ତି ।*
*ଏ ଜନ୍ମରେ ପାଣିକୁ ଡରୁଥିବା ଲୋକଟି କ'ଣ ଆର ଜନ୍ମରେ ବୁଡ଼ିମରିଥିଲା ଜାଣିରେ ! ଏସବୁର ବିଜ୍ଞାନ ଭିତ୍ତିକ ତଥ୍ୟ ଏହି ଅଙ୍କରେ....*

ନିର୍ବାଣ ଜୀବନରେ ଏକମାତ୍ର ଲକ୍ଷ୍ୟ ବୋଲି ସମସ୍ତ ଧର୍ମ ମତପୋଷଣ କରିଥିଲେ ବି ମୋହାବିଷ୍ଟ ମଣିଷ ଗୋଟିଏ ଜନ୍ମରେ ଐଶ୍ୱରୀୟ ମିଳନ ବା ନିର୍ବାଣ ଲାଭ କରି ପାରେନି । କେତେକ ଧର୍ମ ଓ ସଂସ୍କୃତିରେ ଏହା ବିଶ୍ୱାସ କରା ନ ଯାଉଥିଲେ ବି ଗୀତାଧ୍ୟୟନରୁ ଜଣାଯାଏ ନହନ୍ୟତେ ହନ୍ୟମାନେ ନ ଶରୀରେଷ୍ଟୁ । ଅର୍ଥାତ୍ କେବଳ ଶରୀରର ମୃତ୍ୟୁ ଘଟେ । ଆତ୍ମାର ନୁହେଁ । ମଣିଷ ଲୁଗା ପାଲଟିଲା ପରି ଆତ୍ମା ଶରୀର ବଦଳାଇ ଥାଏ । ଆଜିରି ବିଜ୍ଞାନ ଯୁଗରେ ଗୀତାର ଏହି ଉକ୍ତି ସତ୍ୟଭାବେ ପ୍ରମାଣିତ ହୋଇଛି ।

ଦିଲ୍ଲୀର ଏକ ମଧ୍ୟବିତ୍ତ ପରିବାରର ଝିଅଟିଏ । ଜନ୍ମ ପରଠାରୁ ତାର ଶାରୀରିକ ଅଭିବୃଦ୍ଧି ପରିବାର ବର୍ଗଙ୍କୁ ଯେତିକି ବିସ୍ମିତ ନକଲା ପୂର୍ବଜନ୍ମ ସମ୍ପର୍କରେ ତାର ବର୍ଣ୍ଣନା ସେତିକି ଅଭିଭୂତ କଲା ।

—'ମୁଁ ସିନା ଆଜି ଝିଅ ହୋଇ ଏଘରେ ଜନ୍ମ ନେଇଛି, ଗଲା ଜନ୍ମରେ ମୁଁ ମଥୁରାର, କେଦାରନାଥଙ୍କ ସ୍ତ୍ରୀ ଥିଲି । ମୋର ଦୁଇ ପୁଅ, ଗୋଟିଏ ବିବାହିତ ଝିଅ ଓ ସ୍ୱାମୀ କେଦାରନାଥ ଏବେବି ଜୀବିତ ଅଛନ୍ତି ।'

ଛୋଟ ଝିଅ ମୁହଁରୁ ଏକଥା ଶୁଣି ପ୍ରଥମେ ଶିଶୁ ସୁଲଭତାର ଉକ୍ତି ମନେ କରି ପରିବାରବର୍ଗ କେହି ଗୁରୁତ୍ୱ ଦେଲେନି । ମାତ୍ର ଝିଅଟି ପୂର୍ବଜନ୍ମ ସଂବନ୍ଧେ ଅନେକ କଥା ପ୍ରକାଶ କଲା । ତା ଘରର ରଂଗ, ଅବସ୍ଥିତି, ପରିବାର ସଦସ୍ୟଙ୍କ ସଂଖ୍ୟା, ମୃତ୍ୟୁର କାରଣ ଇତ୍ୟାଦି ।

ବାଳିକା ଶାନ୍ତି ଦେବୀର କଥା ପରିବାର ବର୍ଗଙ୍କ ମନରେ ସଂଦେହ ସୃଷ୍ଟିକଲା । ଝିଅ କଣ ସତରେ ତା ପୂର୍ବଜନ୍ମ କଥା ମନେରଖିଛି ନା ତା ମୁଣ୍ଡରେ ଭୂତ ସବାର ହୋଇଛି ? ଦୋଦୁଲ୍ୟମାନ ଅବସ୍ଥାରେ ପରିବାରର ନିକଟ ସଂପର୍କୀୟ ପ୍ରଫେସର କିଶାନ ଚାନ୍ଦ ଶାନ୍ତି ଦେବୀଙ୍କ କଥାର ସତ୍ୟତା ପରଖିବା ପାଇଁ ମଥୁରାର କେଦାରନାଥଙ୍କ ନିକଟକୁ ଚିଠିଟିଏ ପକାଇଲେ । କେଦାରନାଥ, କିଶାନ ଚାନ୍ଦଙ୍କ ଚିଠିକୁ ବିଶ୍ୱାସ ନକରି ଦିଲ୍ଲୀରେ ରହୁଥିବା ତାଙ୍କର ସମ୍ପର୍କୀୟ ଭାଇଙ୍କୁ ପ୍ରାପ୍ତ ଚିଠିର ଅନୁସନ୍ଧାନ ପାଇଁ ସବିଶେଷ ବିବରଣୀ ଜଣାଇଦେଲେ । କେଦାରନାଥଙ୍କ ଭାଇ ପ୍ରଫେସରଙ୍କ ବାପାଙ୍କ ସହ ଆଲୋଚନା କରୁଥିବାବେଳେ, ଶାନ୍ତିଦେବୀ ସେଠାରେ ପହଞ୍ଚି ଆଗନ୍ତୁକଙ୍କୁ ଚିହ୍ନିନେଲେ ଓ ତାଙ୍କ ପୂର୍ବଜନ୍ମର ସଂପର୍କ ଅନୁଯାୟୀ ଆଗନ୍ତୁକଙ୍କୁ ସମ୍ବୋଧନ କଲେ । କେଦାରନାଥ ତାଙ୍କ ପୁଅ ସହ ଶାନ୍ତିଦେବୀଙ୍କ ଘରେ ପହଞ୍ଚିବା ପରେ ଶାନ୍ତି ଦେବୀ ଆନନ୍ଦରେ ଅଧୀରା ହୋଇଉଠିଲେ । ତିନିବର୍ଷର ବାଳିକା ଏକ ଗୃହିଣୀଭାବେ କେଦାରନାଥ ଓ ତାଙ୍କ ପୁଅ ସହ ବ୍ୟବହାର କଲା ।

ଏଥର ଶାନ୍ତି ଦେବୀର କଥାକୁ ଆଉ ଅବିଶ୍ୱାସ କରିବାର କୌଣସି କାରଣ ନଥିଲା । ବିଭିନ୍ନ ଖବରକାଗଜ ଓ ପତ୍ର ପତ୍ରିକାରେ ସଂବାଦଟି ତଡ଼ିତ୍ ବେଗରେ ପ୍ରସରିଗଲା । ଶାନ୍ତିଦେବୀ ଖୁବ୍ ଶୀଘ୍ର ଜଣାଶୁଣା ହୋଇଗଲେ ଓ ପୂର୍ବଜନ୍ମ ସଂପର୍କେ ପ୍ରାମାଣିକ ତଥ୍ୟଟିଏ ମିଳିଗଲା ।

ଏଇମାତ୍ର ଗୋଟିଏ ଦୃଷ୍ଟାନ୍ତ ନୁହେଁ, ପୂର୍ବଜନ୍ମ ସଂପର୍କେ ଅନେକ ଅଭିହିତ ଥିଲେ ବି ଶାନ୍ତି ଦେବୀଙ୍କ ଦୃଷ୍ଟାନ୍ତ ପ୍ରମାଣିତ ହେବା ପରେ ପୂର୍ବଜନ୍ମ ନିମନ୍ତେ ଅନୁସଂଧାନ ଆରମ୍ଭ ହେଲା ଓ ଜଣାଗଲା କେବଳ ଭାରତ ନୁହେଁ ଇୟୁରୋପ, ଆମେରିକା, ଇଂଲଣ୍ଡ, ରୁଷ, ଦକ୍ଷିଣ ଏସିଆ ତଥା ପୃଥିବୀର ଅନ୍ୟାନ୍ୟ ପ୍ରାନ୍ତରରୁ ପୂର୍ବଜନ୍ମର ସମସ୍ତ ଘଟଣାବଳୀକୁ ନିଖୁଣ ଭାବେ ମନେରଖିବା ବ୍ୟକ୍ତି ବିଶେଷଙ୍କର ଖବର ମିଳିଲା । ଲୋକ ସାହିତ୍ୟ, ଉପକଥା ଓ ପୁରାଣ କଥା ଗୁଡ଼ିକ ପୁର୍ନଜନ୍ମର ମୌଳିକତା ତଥା ସତ୍ୟତାକୁ ସ୍ପଷ୍ଟଭାବେ ପ୍ରତିପାଦିକ କଲା । ନିଜର କର୍ମ ଅନୁଯାୟୀ ବାରଂବାର ଜନ୍ମ ଗ୍ରହଣ କରୁଥିବା ପୌରାଣିକ ତଥ୍ୟ ଉପରେ ଆଧାରିତ ସମସ୍ତ ପୁସ୍ତକ ପୁର୍ନଜନ୍ମ ଓ ନିର୍ବାଣର ବଳିଷ୍ଠ ଦୃଷ୍ଟାନ୍ତମାନ ଦେଉଥିଲେ ବି ଜିଜ୍ଞାସୁ ମଣିଷ ନିଜ ନିଜର ଗବେଷଣାମାନ ଅବ୍ୟାହତ ରଖିଲେ ।

ମନସ୍ତତ୍ତ୍ୱବିତ୍‌ଙ୍କ ବିଶ୍ୱାସ ଯେ ହିନ୍ଦୁଦର୍ଶନର ପୁର୍ନଜନ୍ମ ନିମିତ୍ତ ମତବାଦଟି ବ୍ୟବସାୟୀ ଓ ପ୍ରବାସୀ ଭାରତୀୟଙ୍କ ଦ୍ୱାରା ପାଶ୍ଚାତ୍ୟ ସଭ୍ୟତାକୁ ବ୍ୟାପିଲା । ଭରଜିନିଆ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ନର୍ଦ୍ଦେଶକ ଇନ୍ ଷ୍ଟିଭେନସନ ଏହି ଉକ୍ତିର

ଯଥାର୍ଥତାକୁ ଦୃଢ଼ଭାବେ ସ୍ୱୀକାର କଲେ । ଅନେକ ପ୍ରବାସୀ ଭାରତୀୟ ତଥା ଏସିଆ ମହାଦେଶର ଲୋକଙ୍କ ସହ ସାକ୍ଷାତ କରି ଡଃ ଷ୍ଟିଭେନସନ ମତବ୍ୟକ୍ତ କଲେ ଯେ, ମୁଁ ଏହାକୁ ସଂପୂର୍ଣ୍ଣଭାବେ ପରିକଳ୍ପନା କରିପାରୁଛି ଓ ଅସ୍ୱୀକାର କରିବାପାଇଁ କୌଣସି ଯୁକ୍ତି ପାଉନି ।

୧୯୭୦ ମସିହା ଅପ୍ରେଲ ୨୦ ତାରିଖରେ ଓହିଓ ଠାରୁ ଏକ ସଂବାଦ ମିଳିଲା । ତତ୍‌କାଳୀନ ଯୋଜନାମନ୍ତ୍ରୀଙ୍କର ସହଧର୍ମଣୀ ରେଭରେଣ୍ଡ କାରୋଲ ଇ ଜୟଙ୍କ ପତ୍ନୀ ଶ୍ରୀମତୀ ଡେଲାରେସ ଜୟ, ସ୍ୱାମୀଙ୍କ ପିଠିର ଯନ୍ତ୍ରଣା ଉପଶମ ପାଇଁ ପାଣି ସେକ ଦେଉଥିବା ବେଳେ ହଠାତ୍ କିଛି ସମୟ ପାଇଁ ମୂର୍ଚ୍ଛାଗଲେ । ରେଭରେଣ୍ଡ ସ୍ତ୍ରୀଙ୍କ ଏତାଦୃଶ ଅବସ୍ଥାରେ ଚକିତ ହେଲେ ଯେତିକି ବିଦେଶୀ ଭାଷାର ଅସ୍ପଷ୍ଟ ଉଚ୍ଚାରଣ ଶୁଣି ବିସ୍ମିତ ହେଲେ ସେତିକି । କିଛି ସମୟ ପରେ ଶ୍ରୀମତୀ ଜୟ ସଂବିତ୍ ଫେରିପାଇ ବର୍ଣ୍ଣନା କଲେ– ମୋ ନାଁ ଗ୍ରୀଚେନ୍, ମୁଁ ଜର୍ମାନର ଏବ୍ରସୱେଲ୍ଡ ସହରର ମେୟର ହରମାନ ଗ୍ରେଟଲିବ୍‌ଙ୍କ ଝିଅ । ଉନବିଂଶ ଶତାବ୍ଦୀରେ ମୋର ତତ୍କାଳୀନ ସଂସଦୀୟ ପରିଷଦ ସହ ମନମାଳିନ୍ୟ ଘଟିବାରୁ ମୋତେ ହତ୍ୟା କରାଯିବା ପରେ ମୁଁ ପୁନର୍ବାର ଏଇ ଜନ୍ମରେ ପହଞ୍ଚିଛି ।

ସଂବାଦଟି ଗବେଷକମାନଙ୍କ ପାଇଁ ନୂତନ ରାସ୍ତା ଖୋଲିଦେଲା । ଗବେଷକମାନେ ଶ୍ରୀମତୀ ଜୟଙ୍କୁ ପୃଥକ ପୃଥକ ଭେଟିଲେ । ବିଭିନ୍ନ ପ୍ରଶ୍ନ ପଚାରିଲେ । ଶ୍ରୀମତୀ ଜୟଙ୍କୁ ଗବେଷକମାନେ ଭେଟୁଥିବା ସମୟରେ ସେ ଡେଲାରେସ୍ ବିୟରୁ ଶ୍ରୀଚେନକୁ ରୂପାନ୍ତରିତ ହେଉଥିଲେ । ସମସ୍ତ ପ୍ରଶ୍ନର ଉତ୍ତର ଜର୍ମାନ ଭାଷାରେ ହିଁ ଦେଲେ ।

ଶ୍ରୀମତୀ ଜୟଙ୍କ କଥାର ସତ୍ୟାସତ୍ୟ ଜାଣିବା ପାଇଁ ଗବେଷକମାନେ ଓହିଓରୁ ଏବ୍ରସୱେଲ ସହରକୁ ଯାତ୍ରାକରି ବିଶେଷ କିଛି ସଂବାଦ ପାଇଲେନି । ଏହା ଗବେଷକମାନଙ୍କୁ ଏକ ବିଭ୍ରାନ୍ତି ଭିତରକୁ ଟାଣି ନେଉଥିଲା ବେଳେ ଶ୍ରୀମତୀ ଜୟ କେତେକ ଗବେଷକଙ୍କ ସହ ଏବ୍ରସୱେଲ ଯାଇ ନିଜର ପୂର୍ବଜନ୍ମର ସମସ୍ତ ପ୍ରାମାଣିକ ତଥ୍ୟ ମାନ ଯୋଗାଇ ଦେଇ କହିଲେ ଯେ ଗ୍ରିଚେନ୍ ମୋ ଜୀବନର ଏକ ଅଂଶ ମାତ୍ର । ଯାହା ମୋତେ ଏ ଜନ୍ମରେ ସମୟେ ସମୟେ ମାନସିକ ସ୍ତରରେ ମୂହ୍ୟମାନ କରି ରଖୁଛି ।

ପୂର୍ନଜନ୍ମ ବା ପୂର୍ବଜନ୍ମର ସ୍ମରଣ ସଂକ୍ରାନ୍ତରେ ଅନେକ ତଥ୍ୟ ମିଳିଥିଲେ ବି କେତେକ ମନସ୍ତତ୍ତ୍ୱବିତ୍‌ଙ୍କର ଉକ୍ତି ଏହାକୁ ଏକ ବିଭ୍ରାନ୍ତି ଭିତରକୁ ଟାଣିନେଲା । ଏହି ମନସ୍ତତ୍ତ୍ୱବିତ୍‌ମାନେ ଯୁକ୍ତି କଲେ ଯେ କୌଣସି ବ୍ୟକ୍ତି ମୁଣ୍ଡରେ ଭୂତ ସବାର ହେଲେ ସେମାନେ ଇମିତି ଅନେକ କଥା ଗପନ୍ତି ଯାହାକୁକି ପ୍ରମାଣିତ କରାଯାଇ ପାରୁନି । ଦୂରଭାବାପନ୍ନ ଦୁଇବ୍ୟକ୍ତିଙ୍କ ଅତୃପ୍ତ ଆତ୍ମା ଓ ସଇତାନ ମାନଙ୍କ ଦ୍ୱାରା ଏ ସଂଗଠିତ



ଦଲାଇଲାମା

ହେଉଛି । ଏହାକୁ ଖଣ୍ଡନ କରି ଆଉ କେତେକ ମନସ୍ତତ୍ତ୍ୱବିତ୍ ମତଦେଲେ ଯେ କୌଣସି ବ୍ୟକ୍ତିର ଐଶୋରୀୟ ଶକ୍ତି ବା ସ୍ଥାନୀୟ ସଂସ୍କୃତିର ପ୍ରଭାବରୁ ହିଁ କେତେକ ବ୍ୟକ୍ତିଙ୍କର ପୂର୍ବଜନ୍ମ ମନେ ପଡ଼ିଥାଏ ।

ଗ୍ରୀକ୍ ଦାର୍ଶନିକ ପ୍ଲେଟୋ ପୁର୍ନଜନ୍ମ ନିମନ୍ତେ ପ୍ରତ୍ୟକ ବ୍ୟକ୍ତିର କର୍ମ ଓ ଜୀବନ ଚର୍ଯ୍ୟାରେ ସତ୍ୟ ଓ ନ୍ୟାୟର ଅନୁପାଳନ ଉପରେ ନିର୍ଭର କରିଥାଏ ବୋଲି ମତବ୍ୟକ୍ତ କରିଥିଲେ । ଭାରତୀୟ ମତବାଦ ଉପରେ ପର୍ଯ୍ୟବେଶିତ ପ୍ଲେଟୋଙ୍କ ଉକ୍ତିକୁ ପ୍ରଫେସର ଡ୍ୟୁକେଶ ଚାରି ଭାଗରେ ବିଭକ୍ତ କରିଥିଲେ । ଡ୍ୟୁକେଶଙ୍କ ବର୍ଣ୍ଣନାନୁଯାୟୀ ଜୀବନକାଳରେ ସତ୍ୟ ଓ ନ୍ୟାୟକୁ ୧) ସଂପୂର୍ଣ୍ଣଭାବେ ପାଳନ କରୁଥବା ବ୍ୟକ୍ତି ଦାର୍ଶନିକ କିମ୍ବା କଳାକାର, ୨) ଅର୍ଦ୍ଧେକ ପାଳନ କରୁଥିବା ବ୍ୟକ୍ତି ରାଜା, ୩) ଏକ ତୃତୀୟାଂଶ ପାଳନ କରୁଥବା ବ୍ୟକ୍ତି ରାଜନିତିଜ୍ଞ, ଅର୍ଥଶାସ୍ତ୍ରଜ୍ଞ କିମ୍ବା ବ୍ୟବସାୟୀ ଓ ଏକ ଚତୁର୍ଥାଂଶ ପାଳନ କରୁଥିବା ବ୍ୟକ୍ତି ଡାକ୍ତର କିମ୍ବା ଖେଳୁଆଡ଼ ଭାବେ ମୃତ୍ୟୁପରେ ଜନ୍ମ ଗ୍ରହଣ କରିଥାଏ । ଡ୍ୟୁକେଶଙ୍କର ଏହି ବିଶ୍ଲେଷଣରୁ ଜଣାଯାଏ ଯିଏ ଜୀବଦ୍ଦଶାରେ ଭଲ କାମ କରିଥାଏ ମଲାପରେ ଉଚ୍ଚସ୍ଥାନ ପାଇଥାଏ ବା ଉନ୍ନତି କରିଥାଏ । ଯିଏ ଖରାପ କର୍ମ କରିଥାଏ ତାର ଅବନତି ଘଟେ ।

ସ୍ୱପ୍ନ ମାଧ୍ୟମରେ ପୂର୍ବଜନ୍ମ ଦୃଷ୍ଟାନ୍ତ ମନସ୍ତତ୍ତ୍ୱ ପ୍ରଭାବିତ ହୋଇଥାଏ ବୋଲି କେତେକ ଗବେଷକ ମତବ୍ୟକ୍ତ କରିଥାନ୍ତି । ମୋରିସ ନେଥ୍ରୋଟନ 'Past Lives Therapy' ପୁସ୍ତକରେ ତାଙ୍କର ଗବେଷଣା ବିବରଣୀ ବ୍ୟକ୍ତ କରିଛନ୍ତି । ନେଥ୍ରୋଟନଙ୍କ ନିବନ୍ଧ ଅନୁଯାୟୀ ଜଣଙ୍କର ମାନସିକ ବିଦ୍ୱେଷ ଏକ ନିର୍ଦ୍ଦିଷ୍ଟ ମାନସିକତାରେ ସ୍ଥିର ରହି ପୂର୍ବଜନ୍ମ ସ୍ମରଣ କରାଇ ଦେଇଥାଏ । ନେଥ୍ରୋଟନ ପୁନଶ୍ଚ ଉଦାହରଣ ସ୍ୱରୂପ ବ୍ୟକ୍ତ କରିଛନ୍ତି ଯେ ଯଦି କେହି ବ୍ୟକ୍ତି ନିଜର କମ ଉଚ୍ଚତା ପାଇଁ ଭୀଷଣଭାବେ ଭୟଭୀତ ହୁଏ ତାହାହେଲେ ସେ ମନେକରିଥାଏ ଯେ ଏହା ମୋର ପୂର୍ବଜନ୍ମର କର୍ମଫଳରୁ ହିଁ

ହୋଇଛି । ନେପ୍ପୋଲିଅନ ନିଜେ ମଧ୍ୟ ପୂର୍ବ ଜନ୍ମରେ ବିଶ୍ୱାସ କରୁଥିବା ବ୍ୟକ୍ତ କରିଛନ୍ତି ।

ଡଃ ଏଡ଼ିଥ ଫାଓର ''You have been here before'' ପୁସ୍ତକରେ ଲେଖିଛନ୍ତି ଯେ ସେ ପୁସ୍ତକଟି ରଚନା ପାଇଁ ଭେଟିଥିବା ବ୍ୟକ୍ତିମାନଙ୍କର ପୂର୍ବଜନ୍ମର ବର୍ଣ୍ଣନା ମିଥ୍ୟା ନୁହେଁ ମାତ୍ର ଅନେକ ସମୟରେ ଏହା ପାରିବାରିକ ସଂପର୍କକୁ କ୍ଷୁଣ୍ଣ କରିଥାଏ ।

କାଲିଫର୍ଣ୍ଣିଆର ମନସ୍ତତ୍ତ୍ୱବିତ୍ ହେଲେନ ୱାମ୍ବାଙ୍କ ନିବନ୍ଧ ଅନୁଯାୟୀ ସ୍ୱପ୍ନାବସ୍ଥା ଘଟିତ ପ୍ରତ୍ୟାବର୍ତ୍ତନ ହେଉଛି ପୂର୍ବତନ ସଂସ୍କରଣ ଅଧ୍ୟୟନ ନିମନ୍ତେ ଏକମାତ୍ର ଉପଯୁକ୍ତ ଆୟୁଧ । ଏହି ତଥ୍ୟ ସଂକଳିତ ୨୦୦୦ ବିଷୟ ଅଧ୍ୟୟନ କରି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ୯୦ ପ୍ରତିଶତ ପୂର୍ବଜନ୍ମର ଉକ୍ତି ସତ୍ୟ ଅଟେ । ସେ ବ୍ୟକ୍ତ କରିଥିବା ପରିସଂଖ୍ୟାନ ଅନୁଯାୟୀ ଷୋଡ଼ଶ ଶତାବ୍ଦୀ ତୁଳନାରେ ଉନବିଂଶ ଶତାବ୍ଦୀରେ ପୂର୍ବଜନ୍ମ ସମ୍ବନ୍ଧେ ଅବଗତ ହୋଇଥିବା ବ୍ୟକ୍ତିମାନଙ୍କ ସଂଖ୍ୟା ଦୁଇଗୁଣ ଓ ବିଂଶ ଶତାବ୍ଦୀରେ ଏହା ଚାରିଗୁଣ ।

ଷ୍ଟିଭେନ୍‌ସନ୍‌ଙ୍କ ପରି ୱାମ୍ବା ମତ ଦେଲେ ଯେ ପ୍ରଚଳିତ ଜନ୍ମ ପୂର୍ବଜନ୍ମର କର୍ମଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥାଏ । ତାଙ୍କ ନିବନ୍ଧରେ ସେ ବ୍ୟକ୍ତ କରିଛନ୍ତି ଯେ ଯଦି ଜଣେ ବ୍ୟକ୍ତି ଆତ୍ମହତ୍ୟା କରେ ତାହହେଲେ ତାର ଆତ୍ମା ଆଦୌ ଶାନ୍ତି ପାଏନି, ଷ୍ଟିଭେନ୍‌ସନ୍ ମଧ୍ୟ । ଏହାକୁ ଖୁବ୍ ସରଳଭାବେ ବୁଝାଇବାକୁ ଯାଇ ଉଲ୍ଲେଖ କରିଛନ୍ତି ଯେ ଯଦି କୌଣସି ବ୍ୟକ୍ତି ଏ ଜନ୍ମରେ ପାଣିକୁ ଡରୁଥାଏ ତାହେଲେ ସେ ତା ପୂର୍ବଜନ୍ମରେ ନିଶ୍ଚୟ ବୁଡ଼ି ମରିଥିଲା ।

ଷ୍ଟିଭେନ୍‌ସନ୍, ନିଜର ପୂର୍ବଜନ୍ମ ସଂପର୍କେ ଅଭିହତ ଥିବା ୧୬୦୦ ବ୍ୟକ୍ତିଙ୍କୁ ଭେଟିଥିଲେ ଓ ମତ ଦେଇଥିଲେ ଯେ କେତେକ ଅତିରଂଜିତ ଭାବେ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ବଖାଣିଥିଲେ ବି ଅନେକ ସତ୍ୟତା ସେଥିରେ ଭରି ରହିଥିଲା ।

ବୈଜ୍ଞାନିକ ଜ୍ଞାନ କୌଶଳ ସହ ଜଡ଼ିତ ଜନମାନସ ଆଜି ଅନେକ ଯନ୍ତ୍ର ଉଦ୍‌ଭାବନ କରିଥିଲେ ବି ପୂର୍ବଜନ୍ମ ବିବରଣୀ ପାଇଁ କୌଣସି ଯନ୍ତ୍ର ଉଦ୍‌ଭାବନ କରିନି କିମ୍ବା ଏହାକୁ ଅସ୍ୱୀକାର କରିପାରୁନି । ୧୯୩୬ ମସିହାରେ ଦେହ ତ୍ୟାଗ କରିଥିବା ଦଲାଇଲାମାଙ୍କ ପରଜନ୍ମର ଚାକ୍ଷୁଷ ପ୍ରମାଣକୁ କେହି କେବେ ବାଦ୍ ଦେଇ ପାରିବେନି ।



# ଭୂତ-ପ୍ରେତର ଜଗତ

*ସତରେ କ'ଣ ଅଛି ଭୂତ ପ୍ରେତର ଏକ ଅଲୌକିକ ଜଗତ ? ସତରେ କ'ଣ ସିରିଟ୍‌କଲ୍‌ରେ ପ୍ରେତାତ୍ମା ଆସି ଉଭା ହୋଇଯାଏ ଅଚିରେ ? ଏମାନଙ୍କ ଫଟୋ କ'ଣ ଉଠା ଯାଇପାରେ ? ଏମାନଙ୍କ ସ୍ଥିତି ଜାଣିବା ପାଇଁ ବୈଜ୍ଞାନିକମାନେ କ'ଣ ନିର୍ମାଣ କରିଛନ୍ତି ଦୂରବିକ୍ଷଣଯନ୍ତ୍ର ? ଆଜି ଏ ଅବଧି ଏସବୁ ରହସ୍ୟ ଘେରରେ....*

---

ଭୂତ ପ୍ରେତଙ୍କୁ କିଏ ନଡ଼ରେ ଯେ ! ଆଦୌ ଏମାନଙ୍କୁ ନ ଦେଖିଥିବା ଲୋକ ଅନ୍ଧାର ରାତିରେ ଏକା ଯାଉଥିବା ବେଳେ ଖୁଡ଼୍ ଶବ୍ଦଟିଏ ଶୁଣିଲେ ଟିକିଏ ଶଙ୍କିଯାଏ । ଯେ କୌଣସି ଲୋକକୁ ପଚାରିଲେ ସେ ବି କହିଦିଏ । କଳା ମର୍ ମର୍, ବିରାଟ ମୁଣ୍ଡରେ ନମ୍ବା ଚୁଟି, ବଡ଼ ବଡ଼ ବେହେଡ଼ା ଦାନ୍ତ, ଲମ୍ବା ଆଙ୍ଗୁଠିରେ ମୁନିଆ ମୁନିଆ ନଖମାନଙ୍କୁ ନେଇ ଭୂତତ ନଶ୍ଚୟ ଅଛନ୍ତି । ଦିନସାରା କେଉଁଠି ଛପିରହି ରାତିରେ ବାହାରନ୍ତି । ନିଜର ରୂପକୁ ବଦଳେଇ କେତେବେଳେ ବାଳ ଝାମ୍ପୁରି ସାଜି ମୁକୁଳା ଚୁଟିରେ ନଈ କଣ୍ଡିଆରେ ବସି ବାହୁନନ୍ତିତ କେତେବେଳେ ନିଆଁ ଜାଳି ଅପତ୍ୟ ସ୍ନେହରେ କଅଁଳା ଛୁଆକୁ ସେକନ୍ତି । ଏକେଲା ଯାଉଥିବା ବାଟୋଇ ଉପରକୁ ଗୁଣ୍ଡମାଟି ଫିଙ୍ଗନ୍ତି, ନାହିଁତ ରାସ୍ତାକଡ଼ର ବାଉଁଶ ଗଛକୁ ତଳକୁ ଦାବିଦେଇ ହଡ଼ବଡ଼ କରନ୍ତି ।

ଆଜି ନୁହେଁ ପୁରାଣ ଯୁଗରୁ ଭୂତ ମାନଙ୍କର ଉପସ୍ଥିତିକୁ ଜନମାନସ ଗ୍ରହଣ କରିନେଇଛନ୍ତି । ତନ୍ତ୍ରବିଦ୍‌ମାନେ ପ୍ରେତମାନଙ୍କୁ ନିଜର ଆୟତ୍ତାଧୀନ ରଖିଛନ୍ତି । ବେତାଳ ସାଧନା କରି ଅନେକ ଅଲୌକିକ କଥା ଲୋକମାନଙ୍କୁ ଦେଖେଇ ଆସିଛନ୍ତି । କାଉଁରୀ ହାଡ଼ ରଖି ବଡ଼ ଗୁଣିଆର ଆଖ୍ୟା ପାଇଛନ୍ତି । କାହାକୁ କେଉଁଠି ଭୂତ ସବାର ହେଲେ ତନ୍ତ୍ରବିଦ୍‌ମାନେ ଝଡ଼ା ଫୁଙ୍କା କରି ଭୂତ ଘଉଡ଼େଇଛନ୍ତି । ତଥାପି ଭୂତପ୍ରେତ ଭୂପୃଷ୍ଠ ଛାଡ଼ି ଯାଇନାହାନ୍ତି । ମଣିଷ ସମାଜପରି ସେମାନେ କାଳେ ସମାଜଟିଏ ଗଢ଼ିଛନ୍ତି । ଲୋକମାନଙ୍କୁ ଡରାଇବା ସକାଶେ ରହସ୍ୟମୟ ମୃତ୍ୟୁର ଜମାନବନ୍ଦି ବି ସେମାନେ ଦେଲେଣି ।

୧୮୬୯ ମସିହାରେ ଇଟାଲୀର ଜଣେ ଭଦ୍ରମହିଳା ନିଜର ପ୍ରକୋଷ୍ଠରେ ହଠାତ୍ ମା'ଙ୍କ ଉପସ୍ଥିତି ଦେଖି ଖୁସିରେ ନିକଟକୁ ଉଠିଆସି ଦେଖିଲେ କେହିନାହାଁନ୍ତି । ଏମିତି

ଏକ ଅପ୍ରତ୍ୟାଶିତ ଦୃଶ୍ୟରେ ସ୍ତମ୍ଭୀଭୂତ ହୋଇ ଇଟାଲୀଠୁଁ ବହୁଦୂରରେ ରହୁଥିବା ତାଙ୍କ ମା'ଙ୍କ ପାଖକୁ ଚିଠିଟିଏ ଲେଖିଥିଲେ । ଫେରନ୍ତା ଚିଠିରୁ ଜାଣିଲେ ଯେ ସେ ମା'ଙ୍କ ଛାୟାମୂର୍ତ୍ତି ଦେଖିଛନ୍ତି ଠିକ୍ ସେଇଦିନ ଓ ସେଇ ସମୟରେ ଯେଉଁଦିନ କି ତାଙ୍କ ମା' କବର ନେଇଛନ୍ତି ।

୧ ୯ ୧ ୭ ମସିହା ମାର୍ଚ୍ଚ ୧ ୯ ତାରିଖରେ ଇଂଲଣ୍ଡରୁ ଭାରତ ଭ୍ରମଣରେ ଆସିଥିବା ଆଉ ଜଣେ ମହିଳା ନିଜ ହୋଟେଲ ପ୍ରକୋଷ୍ଠରେ ପିଲାକୁ ପୋଷାକ ପିନ୍ଧାଉଥିବା ଅବସରରେ ପଛକୁ ଚାହିଁବା ପାଇଁ କେହି କହୁଥିବାର ଅନୁଭବ କଲେ । ସେ ବୁଲି ଚାହିଁଲେ । ପଛରେ ତାଙ୍କ ବିମାନଚାଳକ ସାନଭାଇ ଛିଡ଼ା ହୋଇଥିବାର ଦେଖି ଆଶ୍ଚର୍ଯ୍ୟ ହେଲେ । ତାଙ୍କର ମନେହେଲା ଯା ଭିତରେ ଭାଇର ଭାରତ ବଦଳି ହୋଇଛି, କୌଣସି ସୂତ୍ରରୁ ସେ ଭାରତ ଆସୁଥିବାର ଜାଣି ତାଙ୍କ ପାଖକୁ ଆସିଛି । ଖୁସିରେ ଅଧୀର ହୋଇ ମହିଳା ଜଣଙ୍କ ସାନଭାଇକୁ ଆଲିଙ୍ଗନ କରିବା ପାଇଁ ଉଠି ଆସୁଥିବାବେଳେ ଟିକିଏ ଅଟକିଗଲେ । କାଳେ ଛୋଟପିଲାଟି ବିଛଣାରୁ ପଡ଼ିଯିବ ଭାବି ଭାଇ ପରିବର୍ତ୍ତେ ପିଲାଆଡ଼କୁ ଦୃଷ୍ଟି ଫେରାଇ ଦେଖିଲେ ଯେ ପିଲାଟି ତାଙ୍କର ନିରାପଦରେ ବସି ରହିଛି । ଏଥର ସେ ଭାଇ ଆଡ଼କୁ ଦୃଷ୍ଟି ଫେରାଇ ଦେଖିଲେ ଯେ ତାଙ୍କ ବିମାନ ଚାଳକ ଭାଇ ଛିଡ଼ାହୋଇଥିବା ସ୍ଥାନରେ ନାହିଁ । ଭଦ୍ର ମହିଳାଙ୍କର ମନେ ହେଲା ସାନଭାଇ ତାଙ୍କ ସହ ଲୁଚକାଳି ଖେଳୁଛି । ସେ କବାଟ କଣ, ଗାଧୁଆ ଘର ଇତ୍ୟାଦି ଅଣ୍ଡାଳି ପକାଇଲେ । କୋଉଠି ବି ଦେଖିଲେନି ସାନଭାଇକୁ । ନିରାଶମନରେ ସୋଫାରେ ବସିଥିବା ବେଳେ ଟେଲିଫୋନରୁ ଖବର ପାଇଲେ ଯେ ଅଳ୍ପ ସମୟ ପୂର୍ବେ ତାଙ୍କ ପଛପଟରେ ଛିଡ଼ା ହୋଇଥିବା ବିମାନଚାଳକ ଭାଇଟି ଯୁଦ୍ଧରେ ନିହତ ହୋଇଛି ।

ଏତିକି ନୁହେଁ ଭୌତିକ ଜଗତ ସଂପର୍କରେ ଅନେକ ଦୃଷ୍ଟାନ୍ତ ରହିଥିଲେ ବି ବୈଜ୍ଞାନିକ ଯୁକ୍ତିବାଦରେ ଜନମାନସ ଏହାକୁ ସହଜରେ ମାନି ନେଉନି । ରାତିରେ ଖସ୍ ଖସ୍ ଶବ୍ଦ ଭୂତ ପରିବର୍ତ୍ତେ କୌଣସି ଜୀବଜନ୍ତୁଙ୍କ ଯିବା ଆସିବା ଶବ୍ଦ, ଚିରୁଗୁଣୀର ନିଆଁ ଜାଳି ଚୁଆକୁ ସେକିବା, 'ବିଲୁଆମାନଙ୍କ ପାଟିର ଫସଫରସରୁ ଅଗ୍ନି ଉତ୍ପନ୍ନ ଆଦି ମତ ଦେଇଛନ୍ତି । କେତେକ ମତ ଦେଉଛନ୍ତି ଯଦି ଭଦ୍ରମହିଳା ଦ୍ୱୟ ନିଜଘର ଭିତରେ ଭୂତ ଦେଖିଲେ ତାହାହେଲେ ସେ ଗଲେ କୁଆଡ଼େ । ଦିନସାରା ଏହି ଭୂତମାନେ ଥା'ନ୍ତି କେଉଁଠି ? ଦେଖଣାହାରୀଙ୍କ ଦୁର୍ବଳ ମାନସିକତା ଯୋଗୁଁ ଭୌତିକ ଜଗତର ସ୍ଥିତି ନିର୍ଭର କରୁଥିବା ବୈଜ୍ଞାନିକ ମାନଙ୍କର ଯୁକ୍ତିକୁ ଖଣ୍ଡନ କରୁଛି ।

ଜର୍ମାନ ଯୁଦ୍ଧର ପରବର୍ତ୍ତୀ ଘଟଣା । ମେନ୍ ଓ ରାଇନ୍ ନଦୀର ସଙ୍ଗମସ୍ଥଳୀରେ ଥିବା ଦୁର୍ଗରେ ବସବାସ କରୁଥିବା ଜମିଦାର ବ୍ୟାରନ୍ ଲ୍ୟାଣ୍ଡସର୍ଟ ନିଜର ଅତୁଳନୀୟ

ରୂପ ବୈଭବସଂପଣା ଏକମାତ୍ର କନ୍ୟାର ବିବାହ ବାଭୋରିୟା ପ୍ରଦେଶର ଜଣେ ସଂଭ୍ରାନ୍ତ ବ୍ୟକ୍ତିଙ୍କ ପୁତ୍ର ସହ ସ୍ଥିରକଲେ । ନିର୍ଦ୍ଧାରିତ ଦିନ ଓ ସମୟରେ ଲ୍ୟାଣ୍ଡସର୍ଟ ଜ୍ଞାତିକୁଟୁମ୍ବ ସହ କ୍ବାଉଁ ଓ ବରଯାତ୍ରୀଙ୍କ ଆସିବା ବାଟକୁ ଚାହିଁ ରହିଲେ । ନିର୍ଦ୍ଧାରିତ ସମୟ ବିତିଗଲା । ଆହାର ସମୟ ସମାଗତ ହେଲା । କ୍ବାଉଁ ନ ପହଞ୍ଚିବାରୁ କିଛି ସମୟ ଅପେକ୍ଷା କରିବାକୁ ବ୍ୟାରନ୍ ନିମନ୍ତ୍ରିତ ଅତିଥିମାନଙ୍କୁ ଅନୁରୋଧ କଲେ । ଦେଖୁ ଦେଖୁ ଦିନ ବିତି ରାତି ହେଲା । କ୍ବାଉଁ, କାଉଣ୍ଟ ଆଲଟେନବର୍ଗଙ୍କ ଦେଖାମିଳିଲାନି । ଅକାରଣ ବିଳମ୍ବରେ ସମସ୍ତେ ଉଦ୍‌ବିଗ୍ନ ହୋଇପଡ଼ିଲେ । ଅତିଥିମାନେ କ୍ଷୁଧାରେ ଅତିଷ୍ଠ ହୋଇଗଲେ ବି ସୌଜନ୍ୟ ବଶତଃ କିଛି ପ୍ରକାଶ କରିପାରିଲେନି । ରାତି ଘନେଇ ଆସିବାରୁ ବ୍ୟାରନ୍ ଭୋଜିପାଇଁ ଆଦେଶ ଦେଲେ । ଟେବୁଲରେ ଖାଦ୍ୟ ସାମଗ୍ରୀ ପରିବେଷଣ ହେବାପରେ ବ୍ୟାରେନ୍ ନିଜର ଦୁଃଖକୁ ନିଜ ମନ ଭିତରେ ସାଇତି ରଖି ଅତିଥିମାନଙ୍କ ନିକଟକୁ ଯାଇ କ୍ଷମା ପ୍ରାର୍ଥନା ମାଗୁଥିବା ବେଳେ ପ୍ରାସାଦର ଫାଟକ ବାହାରେ ଶିଙ୍ଗା ବାଜିଲା । ଶୁଣିବା ମାତ୍ରେ ବ୍ୟାରେନ୍ ତଥା ଉପସ୍ଥିତ ଅତିଥି ଓ ବଂଧୁବାଂଧବଙ୍କ ନିରାନନ୍ଦ ମୁଖ ଉଜ୍ଜଳ ଦିଶିଲା । ବ୍ୟାରେନ୍ ଦ୍ରୁତପାଦରେ ଫାଟକ ଆଡ଼କୁ ଆସି ଦେଖିଲେ ପରିଖାର ଅପର ପାର୍ଶ୍ୱରେ କଳାଘୋଡ଼ା ଚଢ଼ି ଜଣେ ଯୁବକ ଠିଆ ହୋଇଛି । ବ୍ୟାରେନ୍ ଉଲ୍ଲସିତ ହୃଦୟରେ ଯୁବକ ନିକଟରେ ଉପସ୍ଥିତ ହୋଇ ସ୍ୱାଗତ ସଂଭାଷଣ କଲେ । ଅନାଡ଼ମ୍ବର ବେଶରେ କ୍ବାଉଁର ଆଗମନ ବ୍ୟାରେନ୍‌ଙ୍କୁ ଦୁଃଖାଭିଭୂତ କରୁଥିଲେ ବି ପର ମୁହୂର୍ତ୍ତରେ ଏହାକୁ ଯୁବସୁଲଭ ଚପଳତା ମନେ କରି ନିଜକୁ ସାନ୍ତ୍ୱନା ଦେଲେ । ଘୋଡ଼ାରୁ ଓହ୍ଲାଇ ଯୁବକଟି ବ୍ୟାରେନ୍‌ଙ୍କୁ ଅଭିବାଦନ କରିବା ସଂଗେ ସଂଗେ କ୍ବାଉଁର ହାତଧରି ବ୍ୟାରେନ୍ ଭୋଜନ କକ୍ଷକୁ ଘେନିଗଲେ । ଉପସ୍ଥିତ ସଦସ୍ୟମାନଙ୍କୁ କ୍ବାଉଁଙ୍କୁ ଚିହ୍ନାଇଦେଇ ଭୋଜନ ପାଇଁ ଅନୁରୋଧ କଲେ । କାଉଣ୍ଟର ଉପସ୍ଥିତିରେ ସମସ୍ତେ ଆନନ୍ଦ ଧ୍ୱନିମାନ କରିବାକୁ ଲାଗିଲେ । ଆନନ୍ଦ ହିଲ୍ଲୋଳ ଭିତରେ ଯୁବକର ଏକେଲା ଆଗମନ ଓ ଗମ୍ଭୀର ମୁଖଭଙ୍ଗୀ ସମସ୍ତଙ୍କୁ ବିସ୍ମିତ କରୁଥିଲା । କିନ୍ତୁ କ୍ବାଉଁଙ୍କୁ ଅପମାନବୋଧ ହେବାର ମନେକରି ନିକଟସ୍ଥ ଲୋକମାନେ ନୀରବ ରହିଲେ । ଯୁବକଟି ଅସ୍ୱାଭାବିକ ଭଙ୍ଗିରେ ଯାଇ ବ୍ୟାରେନ୍‌ଙ୍କ କନ୍ୟା ନିକଟରେ ଉପସ୍ଥିତ ହେଲା । ସଂଗେ ସଂଗେ ବ୍ୟାରେନ୍‌ଙ୍କ କନ୍ୟା ମୂର୍ଚ୍ଛାଗତ ହେଲା । ଉପସ୍ଥିତ ମହିଳାବର୍ଗ ଅତିଷ୍ଠ ହୋଇ ପଡ଼ିଲେ ଓ କନ୍ୟାକୁ ସାଷ୍ଟାମ କରିବାରେ ଲାଗିଲେ । କନ୍ୟାର ଚେତା ଫେରିବାବେଳକୁ ସେ କେବଳ ଥରୁଥିଲା ଓ ଅଳ୍ପ ସମୟ ପୂର୍ବରୁ ଏକ ମସ୍ତିଷ୍କହୀନ ଯୁବକ ତା ସମ୍ମୁଖକୁ ଆସିଥିବାର ପ୍ରକାଶ କଲା । ସମସ୍ତେ ଯୁବକକୁ ଖୋଜିବାରେ ଲାଗି ପଡ଼ିଲେ । ମାତ୍ର ଯୁବକ ଓ ତା' ଘୋଡ଼ାର କୌଣସି ଚିହ୍ନବର୍ଣ୍ଣ ପ୍ରାସାଦ ବା ତା'ର ଆଖପାଖରେ ଦେଖିବାକୁ ମିଳିଲାନି । ଦ୍ୱାରରକ୍ଷୀଙ୍କ ବାଟଦେଇ ଯୁବକଟି ଫେରିଯାଇଥିବାର କୌଣସି ଦ୍ୱାରରକ୍ଷୀବି ଦେଖି ନଥିଲେ । ବ୍ୟାରେନ୍ ତଥା

ଉପସ୍ଥିତ ଲୋକମାନେ ଆଶ୍ଚର୍ଯ୍ୟରେ ଯିଏ ଯେଉଁଠି ଛିଡ଼ା ହୋଇଥିବା ବେଳେ କାଉଣ୍ଟର ବନ୍ଧୁ ଖବର ଦେଲେ ଯେ କାଉଣ୍ଟ ବିବାହ ପାଇଁ ଆସୁଥିବା ବାଟରେ ଡକାୟତମାନଙ୍କ କବଳରେ ପଡ଼ି ନିହତ ହୋଇଛନ୍ତି ।

ବିବାହ ଉତ୍ସବରେ କ୍ୱାଇଁ ପ୍ରେତାତ୍ମାର ଉପସ୍ଥିତି ବର୍ତ୍ତମାନବାସୀଙ୍କୁ ଆଶ୍ଚର୍ଯ୍ୟ କଲା । କାରଣ ଏହା କେବଳ ବ୍ୟାରେନ୍‌ଙ୍କୁ ଦୃଶ୍ୟମାନ ହୋଇ ନଥିଲା । ଉପସ୍ଥିତ ଶତାଧିକ ବ୍ୟକ୍ତିଙ୍କୁ ଦୃଶ୍ୟମାନ ହୋଇଥିଲା ।

ମାର୍ଗାରେଟ୍ ଶିରୀଡ଼ନଙ୍କ 'ଭୂତଦେଖା' ପୁସ୍ତକରୁ ଜଣାଯାଏ ଯେ ପିଲାଦିନୁ ମାର୍ଗାରେଟ୍ ଭୂତ ଦେଖିଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ବ୍ରିଟିଶ୍ ସେନାବାହିନୀର ଜଣେ ପଦାଧିକାରୀଭାବେ କାର୍ଯ୍ୟରତ ଥିବା ମାର୍ଗାରେଟ୍ ପିତାଙ୍କ ଫେରନ୍ତିକୁ ଅପେକ୍ଷା କରିବା ପାଇଁ ସେ ତାଙ୍କ ମା' ଓ ଭାଇଙ୍କ ସହ ପ୍ଲାମ୍ପଟନରେ ଥିବା ବାସଭବନରେ ରହୁଥିଲେ । ଥରେ ସଂଧ୍ୟା ସମୟରେ ମାର୍ଗାରେଟ୍ ତଳ ମାହାଲାରେ ଥିବା ବୈଠକଖାନାକୁ ଆସିବା ପାଇଁ ସିଡ଼ିରେ ଓହ୍ଲାଉଥିବା ବେଳେ ବୈଠକଖାନାରେ ନୌଚାଳକଙ୍କ ପରି ଧଳାସୁଟ୍ ପିନ୍ଧି ଛୋଟ ପିଲାଟିଏ ଛିଡ଼ା ହୋଇଥିବାର ଦେଖିଲେ । ମୁଣ୍ଡରେ କାଇଁଚ ଟୋପି ପିନ୍ଧିଥିବା ପିଲାକୁ ଦେଖି ମାର୍ଗାରେଟ୍ କିଛି ସମୟ ଛିଡ଼ା ହୋଇ ପିଲାଟିକି ଚାହିଁଲେ । ପିଲାଟି ବି ଅନୁରୂପ ଢଙ୍ଗରେ ମାର୍ଗାରେଟ୍‌ଙ୍କୁ ଚାହିଁ ରହିଲା । ମାର୍ଗାରେଟ୍ ମନେ କଲେ ପଡ଼ିଶା ଘରର ପିଲାଟି ଭୁଲବଶତଃ ତାଙ୍କ ବୈଠକଖାନାକୁ ପଶି ଆସିଛି । ନବାଗତଙ୍କ ସହ କଥାବାର୍ତ୍ତା କରିବା ପାଇଁ ଆୟା ଓ ମା' ବାରଣ କରିଥିବାରୁ ସେ ନୀରବ ରହିଲେ କିନ୍ତୁ ପିଲାଟିକୁ ଶୁଣାଇବା ପାଇଁ ବଡ଼ ପାଟିରେ କହିଲେ ଖେଳିବା ପାଇଁ ମୋତେ ବଂଧୁଟିଏ ମିଳିଗଲା ମାତ୍ର ବୈଠକଖାନାରେ କାହାରିକୁ ପାଇଲେନି । ମାର୍ଗାରେଟ୍ ମା'ଙ୍କ ନିକଟକୁ ଫେରିଆସିଲେ ଓ ସମସ୍ତ ଘଟଣା କହିବାରୁ ଜାଣିଲେ ଯେ ପୂର୍ବରୁ ଶିରୀଡ଼ନଙ୍କ ପରିବାରରୁ କେହି ନୌଜାହାଜରେ କାମ କରୁଥିବା ବେଳେ ମୃତ୍ୟୁବରଣ କରିଥିଲା । ଛବିଶଟି ବସନ୍ତ ଅତିକ୍ରମ କରିସାରିଥିବା ଉକ୍ତ ନୌକର୍ମଚାରୀ ଏକ ଛଅବର୍ଷର ବାଳକରେ ରୂପାନ୍ତରିତ ହୋଇ ପରିବାର ବର୍ଗକୁ ଆଶ୍ଚର୍ଯ୍ୟ କରିଦେଲା । ସାରା ପରିବାର ଭୟରେ ଜଡ଼ ସଡ଼ ହୋଇପଡ଼ିଲେ ବି ଅନ୍ୟମାନଙ୍କ ଠାରୁ ଏହା ଲୁଚାଇ ରଖିଲେ ।

୧୯୬୪ ମସିହାରେ ଡିଟ୍ରେଏଟରଠାରେ ଥିବା ମଟର କାରଖାନାରେ ଏକ ଅଦ୍ଭୁତ ଘଟଣା ଘଟିଲା । ମଟର ସଜାଡ଼ିବା କାର୍ଯ୍ୟରେ ବ୍ୟସ୍ତ ଥିବା ଜଣେ ମେକାନିକ୍ କାରଖାନା ଭିତରେ ମଟର ଚାଳିବାର ଶବ୍ଦ ଶୁଣି ଚମକି ପଡ଼ିଲେ । ମଟର ସଜାଡ଼ିବା ବନ୍ଦ କରି ଶବ୍ଦ ଆସୁଥିବା ଦିଗକୁ ଚାହିଁ ଦେଖିଲେ ବହୁକଷ୍ଟରେ ସଜଡ଼ା ହୋଇ ପାରୁ

ନଥିବା ମଟରଟି ଆପେ ଆପେ ଚାଲିବାକୁ ଆରମ୍ଭ କରିଛି ଓ ମୁଣ୍ଡ ଉପର ଥାକରେ ଥୁଆ ହୋଇଥିବା ଉକ୍ତ ମଟରଟି ଏବେ ହିଁ ତାଙ୍କ ଉପରେ ପଡ଼ିଯିବ । ଆସନ୍ନ ମୃତ୍ୟୁ ଭୟରେ ଶିହିରି ଉଠୁଥିବା କାରିଗରଜଣଙ୍କୁ କେହିଜଣେ ଡେଙ୍ଗା କୃଷ୍ଣକାୟ ବ୍ୟକ୍ତି ସେଠାରୁ ଟାଣି ଉଠାଇନେଲା ।

ମୃତ୍ୟୁ ମୁଖରୁ ଟାଣିଆଣିଥିବା ଏହି ବ୍ୟକ୍ତି ବିଶେଷଙ୍କୁ କୃତଜ୍ଞତା ଜଣାଇବା ପାଇଁ କାରିଗରଜଣକ ପଛକୁ ବୁଲି ଦେଖିଲେ ଯେ ସେଠାରେ କେହି ନାହାନ୍ତି । ପୂର୍ବରୁ ବି ସେ ଏପରି ଜଣେ ଡେଙ୍ଗା ଓ କଳାଲୋକକୁ କେବେ କାରଖାନା ଭିତରେ ଦେଖିନଥିଲେ । କଥାଟି ସହକର୍ମୀମାନଙ୍କୁ ଜଣାଇଲେ । ରକ୍ଷାକାରୀଙ୍କ ସମ୍ପର୍କରେ ସେମାନେ ଅବଗତ ଥିଲେ । କୋଡ଼ିଏ ବର୍ଷ ପୂର୍ବେ କାରଖାନାରେ କାମକରୁଥିବା ଜଣେ ଡେଙ୍ଗା ଓ କଳାଲୋକର ମୃତ୍ୟୁ ପରଠାରୁ ସହକର୍ମୀମାନଙ୍କୁ ଏମିତି ବିଭିନ୍ନ ବିପଦରୁ ଉଦ୍ଧାର କରିଆସୁଥିବାର ଜଣାଇଲେ ।

କେବଳ କାରଖାନା ନୁହେଁ ଆଖପାଖରେ କଥାଟି ଆଲୋଚିତ ହେଲା । ମନସ୍ତତ୍ତ୍ୱବିତ୍, ବିଜ୍ଞାନ ବିଷାରଦମାନେ ଘଟଣା ସଂପର୍କେ ବିଭିନ୍ନ ପରୀକ୍ଷା ନିରୀକ୍ଷା କଲେ । ଦୂରସ୍ଥିତ ଦୁଇବ୍ୟକ୍ତିଙ୍କର ପରସ୍ପର ମନୋଭାବଜ୍ଞାପନକୁ ବିଶ୍ୱାସ କରୁଥିବା ବ୍ୟକ୍ତିମାନେ ବିଶ୍ୱାସ କଲେ ଯେ ନିଜ କର୍ତ୍ତବ୍ୟ ସଂପାଦନାରେ ବ୍ୟସ୍ତ ଥିବା କାରିଗରଟିର ବିପଦକୁ ଦେଖି ମୃତବ୍ୟକ୍ତିର ପ୍ରେତ ହିଁ ତାକୁ ଉଦ୍ଧାର କଲା । ମଟରଟି ତା ମୁଣ୍ଡ ଉପରକୁ ଖସି ଆସୁଥିବାବେଳେ ଜୋର୍‌ରେ ଠେଲି ଦେଇ ପ୍ରେତଟି ତାଙ୍କୁ ରକ୍ଷା କରିଛି ।

ଅସଂଖ୍ୟ ଦୃଷ୍ଟାନ୍ତମାନଙ୍କରୁ ଭୌତିକ ଜଗତର ସ୍ଥିତି ଦୃଢ଼ୀଭୂତ ହୋଇଛି । କେତେକ ଦୃଷ୍ଟାନ୍ତର ପୂର୍ବ ସୂଚନା ଥିଲେ ବି କେତେକ ଦୃଷ୍ଟାନ୍ତର ପୂର୍ବ ସୂଚନା ନାହିଁ । ଭୂତ ଦେଖାଯିବାର କେତେକଙ୍କ ମତରେ ପ୍ରିୟ ପରିଜନମାନଙ୍କ ନିକଟକୁ ମୃତବ୍ୟକ୍ତିର ଆତ୍ମା ଶେଷ ପରିଦର୍ଶନ ପାଇଁ ଆସିବା କିମ୍ବା ଦୂରସ୍ଥିତ ଦୁଇବ୍ୟକ୍ତିର ପରସ୍ପର ମନୋଭାବଜ୍ଞାପନର ଶୈଳୀକୁ ଗ୍ରହଣ କରାଯାଇଥିବାବେଳେ ବୈଜ୍ଞାନିକ ମତବାଦ ଅନୁଯାୟୀ ଭୌତିକ ଜଗତ ହେଉଛି ଅବଚେତନ ମନର ଏକାକୀତ୍ୱ ଓ ବ୍ୟଗ୍ରତାକୁ ହଠାତ୍ ମାଡ଼ି ବସୁଥିବା ଏକ ଦୁର୍ବଳ ମାନସିକତା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ମତବାଦକୁ କେତେକ ଗ୍ରହଣ ନକରି ମତବ୍ୟକ୍ତ କରନ୍ତି ଯେ ଦୃଶ୍ୟମାନ ହେଉଥିବା ଛାୟା ମୂର୍ତ୍ତିଗୁଡ଼ିକ ଭୂତ-ପ୍ରେତ ଛଡ଼ା ଅନ୍ୟ କିଛି ନୁହେଁ ।

ଉନବିଂଶ ଶତାବ୍ଦୀ ମଧ ଭାଗରେ ଯୁକ୍ତରାଷ୍ଟ୍ର ଆମେରିକାର ଏକ ସମୃଦ୍ଧ କୃଷକ ପରିବାରରେ ହାଡ଼ବାଇ ଓରଫ୍ ଡାହାଣୀର ଉପଦ୍ରବ ଉପରୋକ୍ତ ମତବାଦକୁ ଖଣ୍ଡନ କରୁଛି । ଟେନ୍‌ସିଠାରେ ଥିବା ଏହି କୃଷକ ପରିବାରର ମୁଖ୍ୟ ନିଜ ଶସ୍ୟକ୍ଷେତରେ ଏକ

ଆଶ୍ଚର୍ଯ୍ୟଧରଣର କୁକୁର ଦେଖି ଫସଲ ନଷ୍ଟ ହେବା ଆଶଙ୍କାରେ କୁକୁରକୁ ଗୁଳିବିଦ୍ଧ କଲେ । ଗୁଳିବିଦ୍ଧ କୁକୁରକୁ ସେ ସ୍ଥାନରୁ ଅପସାରଣ ପାଇଁ ପହଞ୍ଚି ଦେଖିଲେ ଯେ ସେଠାରେ ନା ଅଛି ମୃତ କୁକୁରର ଶବ, ନା ଅଛି ଗୁଳିବିଦ୍ଧ ଜନିତ ରକ୍ତ କ୍ଷତର ଦାଗ ! କିଛିଦିନ ପରେ ଜନ୍‌ବେଲ ତାଙ୍କ ଦୁଇପୁଅଙ୍କ ସହ ଯାଉଥିବାବେଳେ ଏକ ଅଭିନବ ଚଢ଼େଇ ଦେଖି ଗୁଳିକଲେ । ମୃତ ପକ୍ଷୀଟିକୁ ଆଣିବା ପାଇଁ ପିଲାମାନେ ଦୌଡ଼ି ଯାଇ ନିରାଶରେ ଫେରିଲେ । ଏହାର କିଛିଦିନ ପରେ କୃଷକଙ୍କର ଛୋଟ ଝିଅ, ବେଟ୍ସିବେଲ ଅଭିନବ ଚଢ଼େଇ ଦେଖିଥିବା ବୃକ୍ଷ କଡ଼ରେ, ଏକ ଅପରୂପ ବାଳିକା ଛିଡ଼ା ହୋଇଥିବାର ଦେଖିଲେ, ବେଟ୍ସିଙ୍କ ଝିଅ ଛିଡ଼ା ହୋଇଥିବା ବାଳିକା ନିକଟକୁ ଦୌଡ଼ିଯାଇ କାହାରିକୁ ନପାଇ ଫେରିଆସିଲେ ।

ଉପରୋକ୍ତ ଘଟଣାମାନଙ୍କ ପରେ ଝରକାରେ କେହି ଝଣ ଝଣ କରୁଥିବା, କବାଟରେ ଟିପା ମାରୁଥିବା ଶବ୍ଦ ଶୁଣିବା ସହ ଦାଣ୍ଡ ବାରଣ୍ଡାରେ କେହି ଯିବା ଆସିବା କରୁଥିବାର ଶବ୍ଦମାନ ଶୁଣିବା ସାଙ୍ଗକୁ ରାତିରେ ଶୋଇଥିବା ବେଳେ ଏକ ଦୀର୍ଘ କୃଷ୍ଣକାୟ ହାତ ପରିବାର ବର୍ଗ ତଥା ବେଟ୍ସିଙ୍କ ତଣ୍ଟି ଚିପିବା ପାଇଁ ଆସୁଥିବା ଦେଖି ବିଳିବିଳେଇ ଉଠିଲେ । ବେଟ୍ସି ଅଧିକାଂଶ ରାତିରେ ଫଡ଼ ଫଡ଼ ଶବ୍ଦ ସହ ଚଢ଼େଇ ଉଡ଼ିଯାଉଥିବାର ଶବ୍ଦ ଶୁଣିବାକୁ ପାଇଲେ । ରାତି ପରିବର୍ତ୍ତେ ଦିନରେ ବି ଏଇ ଚଢ଼େଇ ଡେଣା ଝାଡ଼ି ଉଡ଼ିଯିବା ଶବ୍ଦମାନ ବେଟ୍ସିଙ୍କ କର୍ଣ୍ଣ ଗୃହରରେ ପ୍ରତିଧ୍ୱନିତ ହୋଇ ବେଟ୍ସିଙ୍କୁ ଭୟଭୀତ କରିରଖିଲା । ବେଳେ ବେଳେ ବେଟ୍ସି ଶ୍ୱାସରୁଦ୍ଧର ଯନ୍ତ୍ରଣା ଅନୁଭବ କଲେ । ସମୟେ ସମୟେ ମୂର୍ଚ୍ଛାଗତ ହେଲେ । ଆଲପିନ କିମ୍ବା ଛୁଞ୍ଚିରେ ଫୋଡ଼ିହୋଇଯାଉଥିବାର ଯନ୍ତ୍ରଣା ନିଜ ଶରୀରରେ ଅନୁଭବ କଲେ । କିଛିଦିନ ପରେ ଅନେକ ତୀକ୍ଷ୍ଣ ପଦାର୍ଥ ବାନ୍ତି କଲେ । ବେଟ୍ସିଙ୍କ ପରିବାର ବର୍ଗ ସ୍ତମ୍ଭୀଭୂତ ହେଲେ । ଚର୍ଚ୍ଚର ବରିଷ୍ଠ ଧର୍ମଯାଜକମାନେ ଆସି ଏହାର ନିରାକରଣ ନିମନ୍ତେ ଚେଷ୍ଟା କରି ବିଫଳ ହେଲେ । ବେଟ୍ସି ଦିନକୁ ଦିନ ଏହି ଡାହାଣୀର ଭୟରେ ନିଜର ମାନସିକ ଭାରସାମ୍ୟ ହରାଇ ବସିଲେ । କେତେବେଳେ କାନ୍ଦିଲେ ତ କେତେବେଳେ ମନକୁ ମନ ଗପିଲେ । ବେଟ୍ସିଙ୍କ ମା'ଙ୍କୁ ବାଦ୍ ଦେଇ ଅନ୍ୟ ସମସ୍ତ ପରିବାର ସଦସ୍ୟ ବିଭିନ୍ନ ରୋଗରେ ଆକ୍ରାନ୍ତ ହେଲେ । ରୋଗର ନିରାକରଣ ନିମନ୍ତେ ଡାକ୍ତରଙ୍କର କୌଣସି ଔଷଧ କାମଦେଲାନି । ବେଟ୍ସିଙ୍କ ମା'ଙ୍କୁ ବାଦ୍‌ଦେଇ ଅନ୍ୟ ସମସ୍ତ ସଦସ୍ୟ ମୃତ୍ୟୁ ବରଣ କଲେ ।

ବେଲ୍ ପରିବାରର ଦୁରାବସ୍ଥା ମନସ୍ତତ୍ତ୍ୱବିଦ୍‌ଙ୍କ ମନସ୍ତତ୍ତ୍ୱ ବିଶ୍ଳେଷଣର ସମସ୍ତ ଜ୍ଞାନ କୌଶଳକୁ ଖଣ୍ଡ ଖଣ୍ଡ କରିଦେଲେ ବି କେହି ସଠିକ୍ ସିଦ୍ଧାନ୍ତରେ ପହଁଚି ପାରିଲେନି । ମନସ୍ତତ୍ତ୍ୱବିଦ୍ ନାନ୍ଦୁର୍ ଫୋଡର୍ ଘଟଣାର ସର୍ବଶେଷ ଅନୁସନ୍ଧାନକରି ମତବ୍ୟକ୍ତ କଲେ



ଭୂତ ଦେଖିବା ଆଧୁନିକ ଯନ୍ତ୍ର

ଯେ ବେଷ୍ଟି ନିଜର ସଚେତନ ମାନସିକତା, ପ୍ରତ୍ର ଡେନ୍ ବେଲ ନିଜର ମନର ଦୃଢ଼ତା ହରାଇ ସବୁବେଳେ ନିଜକୁ ନିଜେ ଦୋଷୀ ଦୋଷୀ ମନେ କରୁଥିଲେ । ନିଜର ଯୌନଲାଳସା ଚରିତାର୍ଥ କରିବା ପାଇଁ ଉଭୟ ବାପ-ପୁଅ ବିଭିନ୍ନ ଅଶ୍ଳୀଳ ଯୌନକ୍ରିୟାରେ ଲିପ୍ତ ଥିବା ଦୃଷ୍ଟେ ନିଜର ସୁସ୍ଥ ମାନସିକତାକୁ ନିୟନ୍ତ୍ରିତ କରିପାରିଲେନି । ଏହା ବିଭିନ୍ନ ରୋଗର କାରଣ ହେଲା । ପରିବାରର ମୁଖ୍ୟ ଓ ବଡ଼ପୁଅ ରୋଗାକ୍ରାନ୍ତ ହୋଇପଡ଼ିବାରୁ ବେଷ୍ଟିଙ୍କ ସ୍ତ୍ରୀ ବି ରୋଗାକ୍ରାନ୍ତ ହୋଇପଡ଼ିଲେ । ଏହା ଡାହାଣୀ ବା ହାଡ଼ବାଇର କାମ ନୁହେଁ । ଫେଡ଼ରିକ୍‌ଙ୍କ ଉକ୍ତିକୁ ବିଶ୍ୱାସ କରାଯାଉନଥିଲେ ବି ବେଷ୍ଟି ପରିବାରର ଜୀବନଧାରକୁ ବିଶ୍ଳେଷଣ କଲେ ଏହି ଉକ୍ତିକୁ ଅବିଶ୍ୱାସ କରିବାର କୌଣସି ବଳିଷ୍ଠ ଯୁକ୍ତି ନଥିଲା ।

ବିଦେଶ ନୁହେଁ ଆମ ଭାରତବର୍ଷର ସହରଠୁଁ ଗାଁ ଗହଳି ପର୍ଯ୍ୟନ୍ତ ଭୌତିକ ଘଟଣାମାନଙ୍କର ଅନେକ ଦୃଷ୍ଟାନ୍ତ ରହିଛି । ତନ୍ତ୍ରବିଦ୍‌ମାନଙ୍କ ବ୍ୟତୀତ ବୈଜ୍ଞାନିକ କିମ୍ବା ମନସ୍ତତ୍ତ୍ୱବିଦ୍ ଏଗୁଡ଼ିକରେ ପର୍ଯ୍ୟାଲୋଚନା କରି ବିଭିନ୍ନ ସୌଦର୍ଭ ପେଶ୍ କରିଥିଲେ ବି ଭୌତିକ ଜଗତର ସ୍ଥିତିକୁ ଅଗ୍ନିର ଉପସ୍ଥିତି ପରି ଗ୍ରହଣ କରି ନିଆଯାଉଛି । ଯାହାକୁକି କେବଳ ଅନୁଭବ କରାଯାଇପାରେ । ଅନୁଭବ ବ୍ୟତୀତ ଅନ୍ୟକେହି ଭୌତିକ ଜଗତର ସ୍ଥାନକାଳ ଓ ପାତ୍ର ତଥା ସମୟାନୁବର୍ତ୍ତିତା ସଂପର୍କରେ ଟିକିଏ ହେଲେ ପ୍ରାମାଣିକ ତଥ୍ୟ ଉପସ୍ଥାପିତ କରିପାରିବେନି । ରହସ୍ୟମୟ ଏହି ଭୌତିକ ଜଗତ ବୁଢ଼ିଆଣୀର ଅଦୁଆ ଜାଲପରି ଆଧୁନିକ ବିଜ୍ଞାନର ଜ୍ଞାନ କୌଶଳକୁ ଜାବୁଡ଼ି ଧରିଥିଲେ ବି କୌଣସି ସଠିକ୍ ଉତ୍ତର ମିଳିନି ।



# ସାହାରା ମରୁଭୂମିର ଇତିବୃତ୍ତି

*ପୃଥିବୀର ସର୍ବବୃହତ ମରୁଭୂମି ସାହାରା ଦିନେ ଥିଲା ଶସ୍ୟ ଶ୍ୟାମଳା । ଦିନେ ଥିଲା ଘନ ଜନବସତିରେ ପୂର୍ଣ୍ଣ । ଏହାର କଳା ଓ ସଂସ୍କୃତି ଥିଲା ଅତ୍ୟନ୍ତ ଉତ୍କର୍ଷ ।*

*କିନ୍ତୁ ଦିନେ ସେମାନେ ମତ୍ତ ହେଲେ ଆସୁରିକ ପ୍ରବୃତ୍ତିରେ । ହତ୍ୟା, ଲୁଣ୍ଠନ, ନରସଂହାର, ଓ ଏପରିକି ନିଜ ପିଲାର ମାଂସ ନିଜେ ଖାଇବାରେ ରହିଲେ ବ୍ୟସ୍ତ । ଧ୍ୱଂସ ହୋଇଗଲା ସଭ୍ୟତା.... ଶସ୍ୟ ଶ୍ୟାମଳା ସାହାର ପରିଣତ ହେଲା ତପ୍ତ ମରୁଭୂମିରେ ।*

ସାହାରା ପୃଥିବୀର ବୃହତ୍ତମ ମରୁଭୂମି । ଖଜୁରି, ଜବ, ବାଜରା ଓ ଘାସର କେତୋଟି ମରୁଉଦ୍ୟାନକୁ ବାଦ୍ ଦେଲେ ଉଦ୍ଭିଦବିତ୍‌ମାନଙ୍କ ମତବାଦ ଅନୁଯାୟୀ ଏସିଆ ମହାଦେଶର ସ୍ଥଳଭାଗ ଆଡୁ ପ୍ରବାହିତ ଶୁଷ୍କ ଉତ୍ତରପୂର୍ବ ଆୟନବାୟୁଦ୍ୱାରା ଅନାବୃଷ୍ଟି ହେତୁ ସାହାରା ମରୁଭୂମିର ସୃଷ୍ଟି । ଆଫ୍ରିକା ମହାଦେଶର ଆଟ୍‌ଲାସ ପର୍ବତମାଳାଠାରୁ ସାଭନା ପର୍ଯ୍ୟନ୍ତ ବିସ୍ତୃତ ୩୦ ଲକ୍ଷ ବର୍ଗମାଇଲ ପରିମିତ ଭୂଖଣ୍ଡ ସଂପର୍କେ ଖ୍ରୀ.ପୂ. ୪୩୦ରେ ହିରୋଡ଼ଟ୍ ଏକ ବିସ୍ମୟକର ନିବନ୍ଧ ଉପସ୍ଥାପିତ କରିଥିଲେ ।

କର୍କଟକ୍ରାନ୍ତିକୁ କୋଳେଇ ନେଇଥିବା ଏହି ବାଲୁକାମୟ ଭୂଖଣ୍ଡରେ ଗମନାଗମନ ଅସୁବିଧା ତଥା ଗ୍ରୀଷ୍ମ ମଣ୍ଡଳର ଶୁଷ୍କ ଓ ଅସ୍ୱାସ୍ଥ୍ୟକର ଜଳବାୟୁ ଦୃଷ୍ଟେ ସମସ୍ତ ଅଂଚଳ ଏ ଅବଧି ଜନସମାଜଦ୍ୱାରା ଆବିଷ୍କୃତ ହୋଇନଥିଲେ ବି ୨୪୦୦ ବର୍ଷ ତଳେ ହିରୋଡ଼ଟ୍ ତାଙ୍କ ନିବନ୍ଧରେ ଉଲ୍ଲେଖ କରିଥିଲେ ଯେ "ଉକ୍ତ ଭୂଖଣ୍ଡ ଏକଦା ଜନବସତିରେ ପରିପୂର୍ଣ୍ଣ ଥିଲା । ଶସ୍ୟଶ୍ୟାମଳା ଭୂଖଣ୍ଡ ଖୁବ୍ ଉର୍ବର ଥିବାରୁ ଏହାର ୨୦ଲକ୍ଷ କୃଷ୍ଣକାୟ ଅଧିବାସୀ କୃଷି ଓ ଗୋପାଳନ ଉପରେ ନିର୍ଭର କରୁଥିଲେ । ମାତ୍ର କ୍ରମାଗତ ଅନାବୃଷ୍ଟି ଶସ୍ୟଶ୍ୟାମଳା ଭୂଖଣ୍ଡଟିକୁ ମରୁଭୂମିରେ ରୂପାନ୍ତରିତ କଲା ।

ହିରୋଡ଼ଟ୍‌ଙ୍କ ଉକ୍ତି ପଛରେ କୌଣସି ବଳିଷ୍ଠ ଯୁକ୍ତି ଉପସ୍ଥାପିତ ନ କରିଥିଲେ ହେଁ ଭୌଗଳିକବିଦ୍ ଓ ପ୍ରତ୍ନତତ୍ତ୍ୱବିଦ୍ ଏହି ଉପଖଣ୍ଡରୁ ଆବିଷ୍କାର କରିଥିବା ଗୁମ୍ଫାର ଚିତ୍ର ଓ ପ୍ରସ୍ତରଖଣ୍ଡରେ ଥିବା ଶସ୍ୟ ବୃକ୍ଷର ଚିତ୍ରରୁ ଅନୁମାନ କଲେ ଯେ ଏକଦା ସାହାରା ଭୂଖଣ୍ଡରେ ଜନବସତିଟିଏ ଥିଲା ଓ ସଂପୂର୍ଣ୍ଣ ଭୂଖଣ୍ଡଟି ସବୁଜ ଥିଲା । ପରେ ପରେ ଅନୁସଂଧାନରୁ ଜଣାପଡ଼ିଲା ଉକ୍ତ ଭୂଖଣ୍ଡରେ ପୃଥିବୀର ସର୍ବାଧିକ ପ୍ରସ୍ତର ଖୋଦେଇ ଚିତ୍ରମାନ ଅଛି ।

୪୮୦୦ କି.ମି. ଦୈର୍ଘ୍ୟ, ୨୪୦୦ କି.ମି. ପ୍ରସ୍ଥ ଓ ସମୁଦ୍ର ପତ୍ତନରୁ

୪୫୦ମିଟରରୁ ୬୦୦ ମିଟର ଉଚ୍ଚତା ସଂପୂର୍ଣ୍ଣ ସାହାରା ମରୁଭୂମିର ପୂର୍ବ ଐତିହ୍ୟ ଶସ୍ୟଶ୍ୟାମଳା ଓ ବନବହୁଳ ହୋଇଥିବାର ଅନୁମେୟ ହେଉଥିଲେହେଁ କେଉଁ କାରଣରୁ ଏହା ମରୁଭୂମି ପାଲଟିଲା ତାର ପ୍ରକୃତ କାରଣ ଜଣାପଡ଼ିନି ।

ବୈଜ୍ଞାନିକମାନଙ୍କ ମତାମତ ଅନୁଯାୟୀ ହଜାର ହଜାର ବର୍ଷପୂର୍ବେ ସମଗ୍ର ଦକ୍ଷିଣ ଆଫ୍ରିକାରେ ଉନ୍ନତମାନର ମୌସୁମୀବାୟୁ ପ୍ରବାହିତ ହେଉଥିଲା । ଫଳରେ ସେଠାରେ ଜନସମାଜ ବସବାସ କରୁଥିଲେ । ଖ୍ରୀ.ପୂ. ୧୦,୦୦୦ ପର୍ଯ୍ୟନ୍ତ ସିକ୍ତ ମୌସୁମୀବାୟୁ ପ୍ରବାହ ଏହି ଭୂଖଣ୍ଡରେ ପ୍ରବାହିତ ହେଉଥିଲା, କିନ୍ତୁ ପରବର୍ତ୍ତୀ କାଳରେ କେତେକ ଅଜଣା କାରଣରୁ ସେଠାକାର ବାୟୁମଣ୍ଡଳରେ ଅନେକ ପରିବର୍ତ୍ତନ ଘଟିଲା । ବୃଷ୍ଟିପାତର ଭାରସାମ୍ୟ ରହିଲା ନାହିଁ । ସୂର୍ଯ୍ୟତାପ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଲା । ଫଳରେ ବାୟୁମଣ୍ଡଳ ଉଷ୍ମ ଓ ଶୁଷ୍କ ହେଲା ।

ବାୟୁମଣ୍ଡଳର ପରିବର୍ତ୍ତନ ଏକ ପ୍ରାକୃତିକ ପରିବର୍ତ୍ତନ ହେଲେ ହେଁ କେଉଁ କାରଣରୁ ବାୟୁମଣ୍ଡଳର ପରିବର୍ତ୍ତନ ଘଟିଲା ତାର ସଠିକ କାରଣ ଜଣା ଯାଇନଥିଲେ ବି ଗବେଷକମାନେ ସାହାରାର ରୂପ ପରିବର୍ତ୍ତନ ପାଇଁ ତତ୍‌କାଳୀନ ଜନସମାଜକୁ ଦାୟୀ କରିଛନ୍ତି । ପ୍ରଥମେ ଗୃହପାଳିତ ପଶୁ ସେଠାକାର ଉଦ୍ଭିଦଜଗତକୁ ଧ୍ୱଂସ କରିବାରେ ଲାଗିଲେ । ପାର୍ବତ୍ୟ ଜଙ୍ଗଲରେ ନିଆଁଲାଗି କ୍ରମେ ଚାରଣ ଭୂମିରେ ପରିଣତ ହେଲା । କ୍ରମଶଃ ଉଦ୍ଭିଦ ଜନ୍ମରେ ବ୍ୟାଘାତ ଘଟି ଗ୍ରୀଷ୍ମମଣ୍ଡଳୀୟ ତୃଣଭୂମିରେ ପରିଣତ ହେଲା ଓ ଏହି ତୃଣଭୂମିର ଅବକ୍ଷୟରୁ ମରୁଭୂମି ଜନ୍ମ ହେଲା । ଘଞ୍ଚ ଅରଣ୍ୟ, ପାହାଡ଼ି ଝରଣା ଓ ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ର ଚିରଦିନ ପାଇଁ ଆଖି ବୁଜିଦେଇଥିଲେ ବି ତସିଲ୍ ଏନ ଆଡ଼ାର୍‌ଠାରୁ ଆବିଷ୍କୃତ ପ୍ରସ୍ତର ଚିତ୍ର ଭୂଖଣ୍ଡର ପୂର୍ବ ଐତିହ୍ୟକୁ ଉଜ୍ଜୀବିତ୍ କରିରଖିଛି ।

ଯେକୌଣସି ସଭ୍ୟତାର ଶିକ୍ଷା ସଂସ୍କୃତି ତତ୍‌କାଳୀନ ଚିତ୍ରକଳାରେ ପରିସ୍ଫୁଟ ହେଉଥିବା ଦୃଷ୍ଟେ ଆବିଷ୍କୃତ ଗୁମ୍ଫାମାନଙ୍କରେ ଥିବା ପ୍ରସ୍ତରଚିତ୍ର ଓ ଶିଳାଖଣ୍ଡମାନଙ୍କରେ ଥିବା ଗଛବୃକ୍ଷର ଚିତ୍ରରୁ ସାହାରା ଏକଦା ଶସ୍ୟଶ୍ୟାମଳା ଓ ଜନବସତି ସଂପୂର୍ଣ୍ଣ ଭୂଖଣ୍ଡଟିଏ ଥିବାର ଅନୁମାନ କରାଯାଉଛି ।

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଇୟୁରୋପର ଡିକ୍‌ସନ୍ ଦେନାହାମ, ହଗ କ୍ଲାପର୍ଟନ ଓ ୱାଲଟେର କୁଡ଼ନେ ନାମକ ୩ଜଣ ଦୁଃସାହସିକ ଯୁବକ ପ୍ରଥମେ ସାହାରା ପରିଭ୍ରମଣ କରି ସେଠାକାର ହୃତ ଗୌରବ ସଂପର୍କେ ଆଲୋକପାତ କରିଥିଲେ । ୧୮୨୬ ମସିହାରେ ଆଲେକଜାଣ୍ଡର ଜୋର୍ଡ଼ାନ ଲେଇଙ୍ଗ୍ ସାହାରା ଅତିକ୍ରମ କରି କପୋଳକଳ୍ପିତ ଟିମ୍ବକଟୁ ସହରରେ ପହଞ୍ଚିଥିବାର ପ୍ରଥମ ଇୟୁରୋପ ନାଗରିକ ଭାବେ ଖ୍ୟାତି ଅର୍ଜନ କରିଥିଲେ ହେଁ ଟିମ୍ବକଟୁ ସହରରୁ ଆଉ ସ୍ଥୂଳ ଶରୀର ନେଇ ଫେରି ନଥିଲେ । ୧୮୨୮ ମସିହାରେ ଫ୍ରାନ୍ସର ରିନି କାଇଲି ଆର ଅଧିବାସୀଭାବେ ଛଦ୍ମ ରୂପରେ ଟିମ୍ବକଟୁଠାରୁ ଯାତ୍ରା ଆରମ୍ଭ କରି ମର୍କୋଠାରେ ପହଞ୍ଚିଲେ । ତାଙ୍କର ଏହି

ଦୁଃସାହସିକ ମରୁ ଯାତ୍ରାରେ ବିଶୁଷ୍କ ଉତ୍ତାପ, ଘୂର୍ଣ୍ଣିବାତ୍ୟା, ପାଣିର ଅଭାବ, ଅନେକ ସମୟରେ ମରୀଚିକା ଦ୍ୱାରା ପ୍ରଲୋଭିତ ହୋଇ ଅନେକ ଯନ୍ତ୍ରଣା ପାଇଥିଲେ ହେଁ ତାଙ୍କର ଯାତ୍ରା ଅବିସ୍ମରଣୀୟ ଥିଲା ।

କାଇଲିଙ୍କର ମରୁପଥ ଆବିଷ୍କାର ପରେ ନିୟମିତ ମରୁଯାତ୍ରା ଫ୍ରାନ୍ସ ଅଧିବାସୀଙ୍କ ଦ୍ୱାରା ଅବ୍ୟାହତ ରହିଲା ଓ ଫ୍ରାନ୍ସ ସାହାରା ରେଳପଥ ନିର୍ମାଣ ପାଇଁ ପ୍ରେରଣା ଦେଲା ଓ ସେମାନେ ସମଗ୍ର ମରୁଅଂଚଳର ଏକ ନକ୍ସା ପ୍ରସ୍ତୁତ କଲେ । ନକ୍ସାରେ ମରୁଭୂଖଣ୍ଡର ସଂପୂର୍ଣ୍ଣ ଭୌଗଳିକ ଚିତ୍ର ପ୍ରତିଫଳିତ ହେଉଥିଲା ଓ ନକ୍ସାଟି ପ୍ରତ୍ନତତ୍ତ୍ୱବିତ୍‌ଙ୍କ ଗବେଷଣାର ପଥ ଉନ୍ମୁକ୍ତ କରିଥିଲା । ବର୍ଥଙ୍କ ଗବେଷଣା ଅନୁଯାୟୀ ସାହାରାର ସମସ୍ତ ଆୟୁଷକୁ ପୃଥିବୀରେ ଓଟ ସୃଷ୍ଟିକୁ ନେଇ ଦୁଇ ଭାଗରେ ବିଭକ୍ତ କରାଗଲା । ଓଟ ସୃଷ୍ଟିପୂର୍ବର ସାହାରା ଓଟ ସୃଷ୍ଟି ପରର ସାହାରା । ଫ୍ରାନ୍ସ ପ୍ରାଣୀ ବିଜ୍ଞାନୀ ଜି.ବି.ଏମ୍. ଫ୍ଲାମଣ୍ଡ ତାଙ୍କ ତୁଳନାତ୍ମକ ବିଶ୍ଲେଷଣରେ ବର୍ଥଙ୍କ ମତବାଦ ସହ ଏକମତ ହେଲେ ।

୧୯୫୬ ମସିହାକୁ ବୈଜ୍ଞାନିକମାନେ ସାହାରାର ଇତିବୃତ୍ତି ସଂପର୍କେ ବିଶ୍ଲେଷଣ କରିବା ପାଇଁ ଆଗ୍ରହୀ ହେଲେ । ଫ୍ରାନ୍ସର ଅନେକ ଅନୁସଂଧାନକାରୀ ତସିଲ ଏନ୍ ଆଡରକୁ ଗଲେ ଓ ବହୁତ ସଂଖ୍ୟାରେ ଚିତ୍ରକକ୍ଷ ପାଇଲେ ସାକାରବାଦୀ ନିଗ୍ରୋଙ୍କ ଦ୍ୱାରା ଚିତ୍ରକକ୍ଷଗୁଡ଼ିକ ନିର୍ମିତ ହୋଇଥିଲା । ଚିତ୍ରକକ୍ଷଗୁଡ଼ିକରୁ ଜଣାଗଲା ଯେ ସାହାରା ଭୂଖଣ୍ଡରେ ସର୍ବପ୍ରଥମେ ହିଁ ମଣିଷ ସଭ୍ୟତାର ଆରମ୍ଭ ହୋଇଥିଲା । ଏହି ଗବେଷଣାରୁ ତତ୍‌କାଳୀନ ସମାଜର ନିଖୁଣ ଚିତ୍ରଟିଏ ମିଳିଗଲା ।

ଚିତ୍ରକକ୍ଷ ତଥା ଗବେଷଣାରୁ ଜଣାପଡ଼ିଲା ଯେ ସେ ସମୟର ଲୋକମାନଙ୍କ ମଧ୍ୟରେ ଆଦର୍ଶଗତ ମତଭେଦ ଥିବାରୁ ଅନେକ ସମୟରେ କଳହରେ ଲିପ୍ତ ରହୁଥିଲେ । ଏହି କଳହକ୍ରମେ ଘନୀଭୂତ ହୋଇ ପରସ୍ପର ମଧ୍ୟରେ ରକ୍ତପାତ ସୃଷ୍ଟିକରୁଥିଲା । ମରୁଡ଼ିଜନିତ ଖାଦ୍ୟାଭାବ କଳହ ଓ ସଂଘର୍ଷର ଅନ୍ୟ ଏକ କାରଣ ବୋଲି କେତେକ ଗବେଷକ ମତବ୍ୟକ୍ତ କଲେ । ୧୯୧୩ ମସିହାର ଭୟଙ୍କର ଦୁର୍ଭିକ୍ଷରେ ଏକକାଳୀନ ୧୦,୦୦,୦୦୦ ଲୋକ ପ୍ରାଣତ୍ୟାଗ କରିଥିବାର ଜଣାଯାଏ ।

୧୯୭୨-୭୪ ମଧ୍ୟରେ ସାହାରା ଆଉ ଏକ ଦୁର୍ବିପାକର ସମ୍ମୁଖୀନ ହେଲା । ଦୁର୍ଭିକ୍ଷ, ସଂକ୍ରାମକ ରୋଗ ସର୍ବତ୍ର ସାହାରା ଅଂଚଳରେ ଆତଙ୍କ ସୃଷ୍ଟିକଲା । କ୍ଷୁଧା ସେମାନଙ୍କ ମାନସିକ ଶାନ୍ତିରେ ବ୍ୟାଘାତ ସୃଷ୍ଟିକଲା । ଲୋକମାନେ ହତ୍ୟା, ଲୁଣ୍ଠନ ତଥା ନିଜ ପିଲାର ମାଂସ ଖାଇବା ଆଦି ଆସୁରିକ ପ୍ରବୃତ୍ତିରେ ବ୍ୟସ୍ତ ରହିଲେ ଓ କାଳାଦିକ୍ରମେ ସମଗ୍ର ସଭ୍ୟତାଟି ଧ୍ୱଂସ ପାଇଗଲା ଓ ସବୁଜ ସାହାରା ଭୂଖଣ୍ଡ ରୂପାନ୍ତରିତ ହେଲା ମରୁଭୂମି ସାହାରାରେ ।



# ପୃଥିବୀର ନାଭିକେନ୍ଦ୍ର

*ପ୍ରଶାନ୍ତ ମହାସାଗରରେ ଅଛି ଗୋଟେ ଦ୍ୱୀପ, ନାଆଁ ଯାର ଇଷ୍ଟର ଦ୍ୱୀପ । ଏଇ ଦ୍ୱୀପର ଦ୍ରୁତ ସଭ୍ୟତା ଓ ସଭ୍ୟତାର ପ୍ରତିମୂର୍ତ୍ତି ନିର୍ମାଣ କୌଶଳ ସତରେ ରହସ୍ୟଜନକ ।*

*ତେବେ ପ୍ରଶ୍ନ ଉଠେ ସେ ଦ୍ୱୀପର ଏକ ହଜାର ବିଶାଳ ପ୍ରସ୍ତର ମୂର୍ତ୍ତି କାହାର ? ଆଉ ପୁଣି କିଏ ଓ କାହିଁକି ସେଗୁଡ଼ିକ କରିଥିଲା ନିର୍ମାଣ ? ତା'ର ସଠିକ ଉତ୍ତର ଆଜି ବି ରହିଯାଇଛି ରହସ୍ୟରେ ! ତଥାପି ଶତାବ୍ଦୀ ଶତାବ୍ଦୀ ଧରି ଚାଲିଚି ଗବେଷଣା..... ଖୋଜା ଚାଲିଛି ଉତ୍ତର !*

ଛୋଟିଆ ଦ୍ୱୀପଟିଏ ପ୍ରଶାନ୍ତ ମହାସାଗରର ଅତଳ ଜଳରାଶି ମଝିରେ । ସାଧାରଣଭାବେ ଏହାକୁ ପୃଥିବୀର ନାଭିକେନ୍ଦ୍ର କୁହାଯାଉଥିଲେ ବି ଏହାର ଭୌଗଳିକ ନାଁ ଇଷ୍ଟର ଦ୍ୱୀପ । ତ୍ରିଭୂଜ ସଦୃଶ ରାନୋକାଉ, ମାଉଁଙ୍ଗା ତିରିଭାକା ଓ କାଟିକି ଆଗ୍ନେୟଗିରିମାନଙ୍କର ଉତ୍ତପ୍ତ ନିଃଶ୍ୱାସରେ ଏହାର ସର୍ବାଙ୍ଗ ପୋଡ଼ି ପାଉଁଶ ପାଲଟିଛି । କାଉ କୋଇଲିଟିଏ ବି ଦେଖାଯାଉନି । କେଉଁଠି କିମିତି ଗଛଟିଏ ବଂଚିବାକୁ ଅହରହ ସଂଗ୍ରାମ କରିଚାଲିଛି ପ୍ରକୃତି ସହ ।

୧୯୧୪ ମସିହାରେ ଇଂରେଜ ମହିଳା ରୁଟ୍‌ଲେବି ଦ୍ୱୀପଟିକୁ ଆବିଷ୍କାର କଲେ । ତାଙ୍କ ଭ୍ରମଣ କାହାଣୀରେ ଦ୍ୱୀପଟିର ସବିଶେଷ ତଥ୍ୟ ଉପସ୍ଥାପିତ କରନ୍ତେ ଆରମ୍ଭ ହେଲା ଭୌଗଳିକବିତ୍ ଓ ଭୂତତ୍ତ୍ୱବିତ୍‌ମାନଙ୍କର ପରୀକ୍ଷା ନିରୀକ୍ଷା ।

ରୁଟ୍‌ଲେବି ନିଜ କାହାଣୀରେ ଉଲ୍ଲେଖକଲେ ଯେ ଆଗ୍ନେୟଗିରିର ଉତ୍ତପ୍ତ ଲାଭାରେ ଇଷ୍ଟର ଦ୍ୱୀପର ଅତୀତ ଆଜି ପୋତି ହୋଇଯାଇଛି । ମାତ୍ର ନିର୍ଗତ ଲାଭା ପୋତିପାରିନି ଇଷ୍ଟର ଅଧିବାସୀଙ୍କ ଦ୍ୱାରା ନିର୍ମିତ ବିରାଟକାୟ ପ୍ରସ୍ତର ପ୍ରତିମୂର୍ତ୍ତିମାନଙ୍କୁ । ସେ ଏହି ଦ୍ୱୀପଟିକୁ ପୃଥିବୀର ନାଭିକେନ୍ଦ୍ର ପରିବର୍ତ୍ତେ ପ୍ରତିମୂର୍ତ୍ତିର ଗନ୍ତାଘର ଭାବେ ନାମିତ କଲେ ।

କ୍ଷୁଦ୍ର ଦ୍ୱୀପଟିରୁ ୧୦୦୦ ପୂର୍ଣ୍ଣାଙ୍ଗ ପ୍ରତିମୂର୍ତ୍ତି ମିଳିବା ସଂଗେ ସଂଗେ ଅନେକ ଅପୂର୍ଣ୍ଣାଙ୍ଗ ପ୍ରସ୍ତର ନିର୍ମିତ ପ୍ରତିମୂର୍ତ୍ତି ମିଳିଛି । ପ୍ରତିମୂର୍ତ୍ତି ଗୁଡ଼ିକର ଉଚ୍ଚତା ୧୨ଫୁଟ ଓ ଓଜନ ୧୮ରୁ ୨୦ ଟନ୍ । ସର୍ବାଧିକ ଉଚ୍ଚତା ସଂପୂର୍ଣ୍ଣ ପ୍ରତିମୂର୍ତ୍ତିଟିର ଓଜନ ୯୦ଟନ୍ ଓ

ଉଚ୍ଚତା ୩୨ ଫୁଟ । ଅପୂର୍ଣ୍ଣାଙ୍ଗ ପ୍ରତିମୂର୍ତ୍ତି ଗୁଡ଼ିକ ଏହି ସର୍ବାଧିକ ଉଚ୍ଚତା ସଂପୂର୍ଣ୍ଣ ପ୍ରତିମୂର୍ତ୍ତିର ଓଜନ ଓ ଉଚ୍ଚତାର ଦୁଇଗୁଣ ।

ବିରାଟକାୟ ପ୍ରସ୍ତର ପ୍ରତିମୂର୍ତ୍ତିଗୁଡ଼ିକ କିଏ କାହିଁକି ଓ କିପରି ନିର୍ମାଣ କରିଥିଲେ ଏଯାଏଁ ଜଣାପଡ଼ିନି । ଆଉ ଜଣାପଡୁନି ପ୍ରତିମୂର୍ତ୍ତି ଗୁଡ଼ିକ କାହାର ।

ଇଉରୋପ ଇତିହାସରୁ ଜଣାଯାଏ ୧୭୨୨ ମସିହାରେ ଜ୍ୟାକେବ ରୋଗିଭିନ, ଇଷ୍ଟର ଦ୍ୱୀପ ଭ୍ରମଣରେ ଯାଇଥିଲେ । ସେ ଇଷ୍ଟର ସଂପର୍କେ ନିଜର ମତବ୍ୟକ୍ତ କରିଥିଲେ ଯେ ପ୍ରାକୃତିକ ସୌନ୍ଦର୍ଯ୍ୟ ଶୋଭିତ ଦ୍ୱୀପରେ ମଣିଷ ସଭ୍ୟତାଟିଏ ଅଛି ଯେଉଁମାନେ କି କୃଷିକାର୍ଯ୍ୟ କରି ନିଜର ଜୀବିକା ନିର୍ବାହ କରନ୍ତି । ଦ୍ୱୀପଟିରେ ପଡ଼ି ରହିଥିବା ଶହ ଶହ ପ୍ରସ୍ତର ପ୍ରତିମୂର୍ତ୍ତି କେବେ, କାହାଦ୍ୱାରା ଓ କାହିଁକି ନିର୍ମାଣ କରାଯାଉଥିଲା ଜାଣି ହେଉନି ।

୧୭୭୦ ମସିହାରେ ସ୍ପାନିଆଡ଼ ଫିଲିପ ଗନଡାଲିବି, ୧୭୭୪ ମସିହାରେ ପ୍ରସିଦ୍ଧ ଇଂରେଜ ଆବିଷ୍କାରକ କ୍ୟାପ୍‌ଟେନ୍ ଜେମ୍ସ କୁକ୍, ୧୭୮୬ ମସିହାରେ ଫ୍ରେଞ୍ଚ ସେନାଧକ୍ଷ ଜିନ୍ ଫ୍ରାନ୍‌କୋଇଶି ଲା ଫିରୋଜବି ଏହି ଦ୍ୱୀପକୁ ଯାଇଥିବାର ଜଣାଗଲେ ବି ସେମାନଙ୍କ ଭ୍ରମଣ କାହାଣୀରେ ପ୍ରତିମୂର୍ତ୍ତି ସଂପର୍କେ କୌଣସି ତଥ୍ୟ ମିଳି ନଥିଲା । ଜ୍ୟାମେବ୍ ୧୭୨୨ ମସିହାରେ ଇଷ୍ଟର ଦ୍ୱୀପ ଅଧିବାସୀ କୃଷିକାର୍ଯ୍ୟରେ ନିଜର ଜୀବିକା ଅର୍ଜନ କରୁଥିବାର ଉଲ୍ଲେଖ କରିଥିଲେ ହେଁ ଉପରୋକ୍ତ ଅନୁସନ୍ଧିତ୍ସୁଙ୍କ ମତରୁ ଜଣାଗଲା ଯେ ସମଗ୍ର ଦ୍ୱୀପଟିରେ ବାସ କରୁଥିବା ୩୦୦୦ ରୁ ୪୦୦୦ ଲୋକ ହିଂସ୍ର ସ୍ୱଭାବର ଥିଲେ । ନିଜ ନିଜ ମଧରେ ଝଗଡ଼ା କରିବା ଓ ମଣିଷ ମାଂସ ଖାଇବା ସେମାନଙ୍କର ଅଭ୍ୟାସ ଥିଲା ।

ଊନବିଂଶ ଶତାବ୍ଦୀରେ ଦ୍ୱୀପର ଲୋକସଂଖ୍ୟା ହ୍ରାସ ପାଇବାକୁ ଲାଗିଲା । ୧୮୦୫ ମସିହାରେ ଆମେରିକା ୨୨ଜଣ ଇଷ୍ଟର ଅଧିବାସୀଙ୍କୁ କ୍ରୀତଦାସଭାବେ ଆଣିଲା । ୧୮୫୯ରୁ ୧୮୬୨ ପର୍ଯ୍ୟନ୍ତ ପେରୁ ପର୍ଯ୍ୟାୟକ୍ରମେ ୧୦୦୦ ଇଷ୍ଟର ବାସୀଙ୍କୁ କ୍ରୀତଦାସଭାବେ ଆଣି ବିଭିନ୍ନ କାର୍ଯ୍ୟରେ ନିୟୋଜିତ କରି ଦେଖିଲେ ଯେ ସମଗ୍ର ପୃଥିବୀଠାରୁ ବିଚ୍ଛିନ୍ନ ହେଲେ ହେଁ ଇଷ୍ଟର ଅଧିବାସୀମାନେ କର୍ମନିପୁଣ ଓ କର୍ମଠ । କିଛି ବର୍ଷ ପରେ ପେରୁ ୧୦୦ଜଣ କ୍ରୀତଦାସଙ୍କୁ ମୁକ୍ତି ଦେଇଥିଲେ ହେଁ ମାତ୍ର ୧୫ଜଣ ଇଷ୍ଟରରେ ପହଁଚିଥିଲେ ଓ ସାଙ୍ଗରେ ଘେନି ଯାଇଥିଲେ ବସନ୍ତ ରୋଗରୁ ଜୀବାଣୁ ବା ମୃତ୍ୟୁଦୂତ । ବହୁ ଇଷ୍ଟର ଅଧିବାସୀ ବସନ୍ତ ରୋଗରେ ମୃତ୍ୟୁ ବରଣ କଲେ ଓ ଏହାର ଜନସଂଖ୍ୟା କମି ୧୮୭୭ ମସିହାକୁ ମାତ୍ର ୧୧୧ ଥିଲା ।

ଚିଲେନ୍ ଇଷ୍ଟରରେ ପହଁଚି ଦେଖିଲେ ସେଠିକାର ଲୋକମାନେ ଖୁବ୍ ଦୟନୀୟ

ଭାବେ ବଂଚିଛନ୍ତି । ଇଷ୍ଟର ଚେଲିଙ୍କର ଶାସନାଧୀନ ରହିଲା ଓ ସେଠାରେ ଥିବା ବିରାଟକାୟ ପ୍ରସ୍ତରର ପ୍ରତିମୂର୍ତ୍ତି ଗୁଡ଼ିକ ପୃଥିବୀବାସୀଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ହେଲା ।

ପ୍ରତିମୂର୍ତ୍ତିଗୁଡ଼ିକର ଜନ୍ମ ସଂପର୍କେ ହୋଇଥିବା ଗବେଷଣା ମଧ୍ୟରୁ ୧୮୬୬ ମସିହାରେ ଆମେରିକାର ଥୋମସନ୍, ୧୯୧୪ରୁ ୧୯୧୫ ମସିହା ମଧ୍ୟରେ ଇଂଲଣ୍ଡର କ୍ୟାଥରିନ୍ ରୁଟ୍‌ଲେଜ୍ ୧୯୩୪ରୁ ୧୯୩୫ ମସିହା ମଧ୍ୟରେ ଫ୍ରାନ୍ସର ଆଲଫ୍ରେଡ୍ ମେଟରାକ୍ସ ଓ ବେଲଜିୟମର ହେନେରୀ ଲାଭଚେରୀ, ୧୯୩୫ରୁ ୧୯୩୯ ମଧ୍ୟରେ ଜର୍ମାନ ମିଶନାରୀ, ଶେବାସ୍ତିୟାନ ଏନଡଲାଇ, ୧୯୫୫ରୁ ୧୯୫୬ ମଧ୍ୟରେ ନରୱେର ଥର ହେଉରଦାଲ ଓ ଆମେରିକା ନୃତତ୍ତ୍ୱବିତ୍ ଇଲିୟମ ମୂଲେଙ୍କ ସୌଧର୍ଭମାନ ପ୍ରଣିଧାନଯୋଗ୍ୟ ।

ହସ୍ତଗତ ହୋଇଥିବା ଉପରୋକ୍ତ ସୌଧର୍ଭମାନ ପ୍ରତିମୂର୍ତ୍ତି ଓ ଦ୍ୱୀପର ଅତୀତ ସଂସ୍କୃତିର ଅନେକ ତଥ୍ୟ ଉପସ୍ଥାପିତ କରିଛି ।

କେତେକ ମତବାଦ ଅନୁଯାୟୀ ଦ୍ୱୀପଟି ସାଗର ବକ୍ଷରେ ପୋତି ହୋଇଥିବା ମହାଦେଶର ଅବଶିଷ୍ଟାଂଶ । ଏହାର ଅଧିବାସୀ ଦେବଦୂତ ଥିଲେ । ଆଉ କେତେକଙ୍କ ମତ ଅନୁଯାୟୀ ପ୍ରାଚୀନ ଇଜିପ୍ଟର ଅସନ୍ତୁଷ୍ଟ ଲୋକମାନେ ଏହି ଦ୍ୱୀପରେ ରହୁଥିଲେ ।

ଆଧୁନିକ ଗବେଷକମାନେ ସର୍ବସମ୍ମତି କ୍ରମେ ମତବ୍ୟକ୍ତ କଲେ ଯେ ପ୍ରତିମୂର୍ତ୍ତିଗୁଡ଼ିକ ପଲିନେସିଆମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

ଇଷ୍ଟର ଅଧିବାସୀମାନଙ୍କ ଠାରୁ ଶୁଣାଯାଏ ଯେ ଧାର୍ମିକ ନେତା ହୋତୁ ମଣ୍ଟୁ ପ୍ରଥମେ ଇଷ୍ଟର ଦ୍ୱୀପରେ ସଭ୍ୟତାସୃଷ୍ଟି କରିଥିଲେ । ହୋତୁ ମଣ୍ଟୁ ଯୁଦ୍ଧରେ ପରାଜୟବରଣ କଲାପରେ ଆତ୍ମଗ୍ଲାନିରେ ନିଜର ଜନ୍ମସ୍ଥାନ ଛାଡ଼ିବାକୁ ସଂକଳ୍ପ କଲେ । ବସବାସ ପାଇଁ ନୂଆସ୍ଥାନଟିଏ ଖୋଜି ବୁଲୁଥିଲା ବେଳେ ତାଙ୍କର ଜଣେ ସହକର୍ମୀ ସୂର୍ଯ୍ୟ ଉଦୟ ହେଉଥିବା ଦିଗରେ ଗୋଟିଏ ସୁନ୍ଦରସ୍ଥାନ ଥିବାର ସଂବାଦ ଦେଲେ । ୭ଜଣ ସାମନ୍ତଙ୍କ ସହ ସ୍ଥାନଟିର ଠିକଣା ଯୋଗାଇ ଦେଇଥିବା ସହକର୍ମୀ ସମୁଦ୍ର ବକ୍ଷରେ ଆସି ଅନେକ ପଶୁପକ୍ଷୀ ଓ ଗଛବୃକ୍ଷର ଚାରାସହ ଇଷ୍ଟର ଦ୍ୱୀପରେ ପହଁଚିଲେ । ମଣ୍ଟୁ ବେଶିଦିନ ନ ବଂଚିଥିଲେ ହେଁ ସମଗ୍ର ଦ୍ୱୀପକୁ ଭାଗ କରି ତାଙ୍କ ପୁଅମାନଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ ।

ଗବେଷକମାନେ ଇଷ୍ଟର ଜନଶ୍ରୁତିକୁ କିଛି ପରିମାଣରେ ବିଶ୍ୱାସ କରୁଥିଲେ ହେଁ ସଂପୂର୍ଣ୍ଣ ନିର୍ଭର କରିପାରନ୍ତିନି । ସେମାନେ କେବଳ ବିଶ୍ୱାସ କରନ୍ତି ଯେ ମଣ୍ଟୁଙ୍କର ବଂଶଧରମାନେ ପ୍ରତିମୂର୍ତ୍ତିଗୁଡ଼ିକ ନିର୍ମାଣ କରିଥିଲେ । ୧୧୧୦ ଖ୍ରୀ.ଅ.ରୁ ୧୬୫୦

ଖ୍ରୀ.ଅ. ମଧ୍ୟରେ ପ୍ରତିମୂର୍ତ୍ତି ଗୁଡ଼ିକ ନିର୍ମିତ ହୋଇଥିଲା । ଏହି ଦ୍ୱୀପର ଅଧିବାସୀମାନେ ଦୁଇଭାଗରେ ବିଭକ୍ତ ହେଲେ । ଦଳିତ ଜାତି 'ହାନାଉ ଇପି' ଅର୍ଥାତ୍ ବଳିଷ୍ଠ ଲୋକ ଓ ଅନ୍ୟଟି 'ହାନାଉ ମୋମେକୋ' ଅର୍ଥାତ୍ ସୂକ୍ଷ୍ମ ଲୋକ । ଇଷ୍ଟର ଇତିହାସ ଅନୁଯାୟୀ ମୋମୋକୋ ବା ସୂକ୍ଷ୍ମ ଲୋକ ହୋତୁ ମାଣ୍ଟୁଙ୍କର ପ୍ରକୃତ ବଂଶଧର ।

କିଛିଦିନ ପରେ ଉଭୟ ଗୋଷ୍ଠୀମଧ୍ୟରେ କନ୍ଦଳ ଆରମ୍ଭ ହେଲା । ମୋମୋକୋ ଗୋଷ୍ଠୀ, ଇପୋ ଗୋଷ୍ଠୀ ଉପରେ ଆକ୍ରମଣ କଲେ । ଇପୋ ଗୋଷ୍ଠୀ, ପୋଇକି ଆଗ୍ନେୟଗିରିର ଗର୍ଭ ମଧ୍ୟରେ ଆତ୍ମଗୋପନ କଲେ । ଭବିଷ୍ୟତରେ ସୁରକ୍ଷା ନିମନ୍ତେ ଏକ ମଜଭୂତ ଗଡ଼ାଖାଇ ନିର୍ମାଣ କଲେ ଓ ଖାଇ ଭିତରେ ଜାଳେଣୀ ତେଲ ଦେଇ ନିଆଁ ଲଗାଇ ରଖିଲେ । ମାତ୍ର ଦୁର୍ଭାଗ୍ୟବଶତଃ ଇପୋ ଗୋଷ୍ଠୀର ଜଣେ ବିଶ୍ୱାସଘାତକ ନିଜ ଗୋଷ୍ଠୀର ସୁରକ୍ଷା ନିମନ୍ତେ ନିର୍ମାଣ କରାଯାଇଥିବା କୃତ୍ରିମ ଆଗ୍ନେୟଗିରି ସମ୍ବନ୍ଧୀୟ ତଥ୍ୟ ମୋମୋକେ ଗୋଷ୍ଠୀକୁ ଜଣାଇଦେଲା । ପ୍ରଥମ ଆକ୍ରମଣରେ ନିରାଶ ହୋଇଥିବା ମୋମୋକୋ ଗୋଷ୍ଠୀ ପୁନଃ ଆକ୍ରମଣ କରନ୍ତେ ଇପୋ ଗୋଷ୍ଠୀ ଆପେ ଆପେ ଜଳନ୍ତା ନିଆଁରେ ଆତ୍ମାହୂତି ଦେଲେ । କେବଳ ଜଣେ ମାତ୍ର ବଂଚି ରହିଲା । ଏ ଅବଧି ବଂଚିଥିବା ଇଷ୍ଟର ଦ୍ୱୀପର ଯେକୌଣସି ଅଧିବାସୀ ଆତ୍ମାହୂତିରୁ ବଂଚିଥିବା ସେଇ ଜଣଙ୍କର ବଂଶଧର ବୋଲି ଦାବି କରନ୍ତି । ଇପୋ ଗୋଷ୍ଠୀଦ୍ୱାରା ନିର୍ମିତ ଖାଇ ଏ ଅବଧି ଦ୍ୱୀପରେ ବିଦ୍ୟମାନ ।

ରଶ୍ମି ବିତରକ ଯନ୍ତ୍ରଦ୍ୱାରା ବିଶ୍ଳେଷଣରୁ ଜଣାଯାଏ ଇଷ୍ଟର ଦ୍ୱୀପରେ ପ୍ରତିମୂର୍ତ୍ତି ଗୁଡ଼ିକ ୧୬୫୦ଖ୍ରୀଷ୍ଟାବ୍ଦ ସୁଦ୍ଧା ନିର୍ମିତ ହୋଇଥିଲା । ମାତ୍ର ଏହି ପ୍ରତିମୂର୍ତ୍ତି ଗୁଡ଼ିକ ନିର୍ମାଣ ପାଇଁ ଇଷ୍ଟର ଅଧିବାସୀଙ୍କୁ କିଏ ପ୍ରେରଣା ଯୋଗାଇଲା ଓ କେତେଦିନ ସମୟ ଲାଗିଲା ଏବଂ ଏହାର ପରିବହନ କିମିତି ସଂଭବ ହେଲା ଜଣାଯାଉନି । ହେର୍ବାଲ ଗବେଷଣା ପ୍ରତିଷ୍ଠାନର ପ୍ରତ୍ନତତ୍ତ୍ୱବିତ୍ ଆର୍ନେ ସ୍କିତୋଲଉନି ପ୍ରତିମୂର୍ତ୍ତିଗୁଡ଼ିକୁ ଅତି ସୂକ୍ଷ୍ମଭାବେ ପରୀକ୍ଷା କରି ମତ ଦେଲେ ଯେ ୧୬ଫୁଟ ଉଚ୍ଚତା ବିଶିଷ୍ଟ ଗୋଟିଏ ପ୍ରତିମୂର୍ତ୍ତି ନିର୍ମାଣ ପାଇଁ ଶତାଧିକ କାରିଗର ନିୟୋଜିତ ହୋଇ ପୂର୍ଣ୍ଣାଙ୍ଗ କରିବା ପାଇଁ ଏକବର୍ଷ ସମୟ ନେଇଛନ୍ତି । ଦ୍ୱୀପର ସଂସ୍କୃତି ଓ କିମ୍ବଦନ୍ତୀରୁ ଜଣାଯାଏ ଯେ ପ୍ରତିମୂର୍ତ୍ତିଗୁଡ଼ିକ ଦୈବୀ ଶକ୍ତି ଦ୍ୱାରା ନିର୍ମିତ ହୋଇଛି ଓ ଆପେ ସ୍ଥାନ ଅଧିକାର କରିଛି । ଏହା କୌଣସି ମଣିଷ ସୃଷ୍ଟି ନୁହେଁ ।

ଉଇଲିୟମ ମୂଲେ ପ୍ରତିମୂର୍ତ୍ତି ସଂପର୍କେ ମତ ଦେଲେ ଯେ ଇଂରାଜୀ ଅକ୍ଷର 'Y' ସଦୃଶ ଶକ୍ତି ଛାଞ୍ଚ ଉପରେ ପ୍ରତିମୂର୍ତ୍ତି ଗୁଡ଼ିକ ନିର୍ମିତ କରାଯାଇଛି । ଏହାର ପେଟ ଓ ମୁଣ୍ଡର ଆକାର କୌଣସି ଫେଶନ ପାଇଁ ଉଦ୍ଦିଷ୍ଟ ନୁହେଁ ।



୧୯୬୦ରେ ଇଷ୍ଟର ଦ୍ୱୀପରୁ ଉଦ୍ଧାର କରାଯାଇଥିବା ସାତଟି ପଥର ମୂର୍ତ୍ତି

ଦ୍ୱୀପଟିର ହୃତ ସଭ୍ୟତା ଓ ପ୍ରତିମୂର୍ତ୍ତିର ନିର୍ମାଣ କୌଶଳ ଓ ନିର୍ମାଣର କାରଣ ସଂପର୍କେ ଏ ଅବଧି ଅନେକ ପରୀକ୍ଷା କରାଯାଇଥିଲେ ବି ସଭ୍ୟତାଟିର ଧ୍ୱଂସର କାରଣ ଓ କଳା ପାରଦର୍ଶିତାର ସଠିକ୍ କାରଣ ଠିକ୍ ଭାବରେ ଜଣାପଡ଼ିନି । ମାତ୍ର ଏତିକି କୁହାଯାଇପାରେ ପ୍ରତିମୂର୍ତ୍ତିଗୁଡ଼ିକ ଆକାଶକୁ ଚାହିଁ ଭଗବାନଙ୍କୁ ପ୍ରାର୍ଥନା କରୁଛନ୍ତି ଆଉ ଜଣେ ମେଧାବୀ ଧରାପୃଷ୍ଠରେ ଜନ୍ମ ନେଇ ପ୍ରତିମୂର୍ତ୍ତି ଗୁଡ଼ିକର ଜନ୍ମ ବୃତ୍ତାନ୍ତରେ ପୃଥିବୀବାସୀଙ୍କୁ ଜ୍ଞାନବନ୍ତ କରୁ ।



# ବ୍ଲାକ୍ ହୋଲ୍

*ବାୟୁମଣ୍ଡଳ ଓ ଜଳବାୟୁର କୌଣସି ପରିବର୍ତ୍ତନ ନହୋଇ ସୃଷ୍ଟି ହୋଇପାରେ ପ୍ରଳୟଙ୍କାରୀ ଘୂର୍ଣ୍ଣିଝଡ ! ହୋଇପାରେ ପୁଣି ଭୂକମ୍ପନ ! ଏପରି ଘଟିଚି, ଘଟିଚି ସାଇବେରିଆରେ । ଥରେ ନୁହେଁ.... ଅନେକ ବାର । ପ୍ରାୟ ଦେଢ ଶତାବ୍ଦୀଧରି ଚାଲିଚି ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା । ତେବେ ବି ଏଇ ରହସ୍ୟର ସୂତ୍ର ସବୁରି ପାଖରେ ଏବେବି ଅଗୋଚର ।*

ବିଶ୍ୱର ଗଠନ ଓ ପ୍ରକୃତି ଏବଂ ବ୍ରହ୍ମାଣ୍ଡୋତ୍ପତ୍ତି ପ୍ରଭୃତି ସମସ୍ୟାଗୁଡ଼ିକର ରହସ୍ୟୋଦ୍‌ଘାଟନ କରିବା ପାଇଁ ସବୁ ଯୁଗରେ ମନୁଷ୍ୟ ମନରେ ଅସୀମ କୌତୂହଳ ଜାତ ହୋଇଛି ଏବଂ ନିଜ କୌତୂହଳର ଅବସାନ ଘଟାଇବା ପାଇଁ ସେ ଯତ୍‌ପରୋନାସ୍ତି ଉଦ୍ୟମ କରିବାକୁ କୁଣ୍ଠିତ ହୋଇନାହିଁ । ଆଧୁନିକ ଯୁଗରେ କୌତୁହଳ ପୂର୍ଣ୍ଣ ପ୍ରଶ୍ନଗୁଡ଼ିକର ସଠିକ୍ ଉତ୍ତର ପାଇବା ପାଇଁ ପ୍ରକୃତିର ଅହେତୁକ ଘଟଣାବଳୀ ଅନେକ ଖୋରାକ ଯୋଗାଇ ଆସିଛି ।

୧୯୦୮ ମସିହା ଓ ୧୯୬୦ ମସିହାରେ ଯାଦୁଖେଳ ପରି, ମଧ୍ୟ ସାଇବେରିଆର ତୁଙ୍ଗାସ ଅଞ୍ଚଳରେ ହଠାତ୍ ସଂଗଠିତ ହୋଇଥିବା ଘୂର୍ଣ୍ଣିବାତ୍ୟା ଓ ତଦ୍‌ଜନିତ କ୍ଷୟକ୍ଷତିର କାରଣ ଏ ଅବଧି ରହସ୍ୟାବୃତ୍ତ ।

୧୯୦୮ ମସିହା ଜୁନ୍ ମାସର ୩୦ ତାରିଖ ସକାଳ ଘ୭.୧୭ମି.ରେ ହଠାତ୍ ମଧ୍ୟ ସାଇବେରିଆର ତୁଙ୍ଗାସ ଅଂଚଳରେ ବାୟୁମଣ୍ଡଳ ଅଶାନ୍ତ ହୋଇଉଠିଲା । ୨୦ମାଇଲ ପରିମିତ ଅଞ୍ଚଳରୁ ଗଛବୃକ୍ଷ ଉପୁଡ଼ି ପଡ଼ିଲା । କେତେକ ଘରର ଚାଳ ଉଡ଼ିଯିବା ସଂଗେ ସଂଗେ କାନ୍ଥ ପଡ଼ିଗଲା । ଝଡ଼ ମନେକରି ଲୋକମାନେ ନୀରବ ରହିଲେ । ମାତ୍ର ୧୯୬୦ ମସିହାରେ ପୁନର୍ବାର ଠିକ୍ ସେଇ ସ୍ଥାନରେ ଘୂର୍ଣ୍ଣିବାତ୍ୟା ସଂଗଠିତ ହେଲା । ଏଥର କ୍ଷୟକ୍ଷତି ଏତେ ପରିମାଣରେ ଘଟିଲା ଯେ ଲୋକମାନେ ଭୟରେ ଥରିବାକୁ ଲାଗିଲେ । ବଡ଼ ଗଛ ଗୁଡ଼ିକ ଉପୁଡ଼ି ଅନେକ ଦୂରରେ ପଡ଼ିଲା । ଘର ଗୁଡ଼ିକର ମୂଳଦୁଆ ବ୍ୟତୀତ ଅନ୍ୟ କିଛି ଦେଖାଗଲାନି । ଝଡ଼ ତୋଫାନ ସହ ଲୋକମାନେ ଭୂମିକମ୍ପ ଅନୁଭବ କଲେ ।



ପୃଥିବୀକୁ ଏକ ଟେନିସ୍ ବଲ୍ ସହିତ ତୁଳନା କରି ଓ ତା'ର ମାଧ୍ୟାକର୍ଷଣ ଶକ୍ତିକୁ ବିଚାରକୁ ନେଇ 'କୃଷ୍ଣ ଗର୍ତ୍ତ'ର ଚିତ୍ର

ବାୟୁମଣ୍ଡଳ ଓ ଜଳବାୟୁରେ କୌଣସି ପରିବର୍ତ୍ତନ ନଥାଇ ଅପ୍ରତ୍ୟାଶିତ ଦୁଇଥର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଘୂର୍ଣ୍ଣିବାତ୍ୟା ଭୂମିକମ୍ପ ଅନୁଭୂତ ହେବାର କାରଣ କିଛି ଜଣାପଡ଼ିଲାନି । ପଦାର୍ଥ ବିଜ୍ଞାନୀ ତଥା ଭୂତତ୍ତ୍ୱବିଦ୍ ନିଜର ଗବେଷଣା ଆରମ୍ଭ କଲେ ।

ପ୍ରଥମେ ପ୍ରତ୍ୟକ୍ଷଦର୍ଶୀ ସ୍ଥାନୀୟ ଲୋକମାନଙ୍କ ଠାରୁ ତଥ୍ୟ ସଂଗ୍ରହ କରାଗଲା । ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀରୁ ଜଣାପଡ଼ିଲା ଯେ ୧୯୬୦ ମସିହାରେ ଏକ ବିରାଟ ଆଲୋକ ବର୍ତ୍ତିକା ସୌରମଣ୍ଡଳରୁ ତଡ଼ିତ୍ ବେଗରେ ଭୂପୃଷ୍ଠ ଆଡ଼କୁ ମାଡ଼ିଆସିଲା । ଏହା ଏତେ ଉଜ୍ଜ୍ୱଳ ଥିଲା ଯେ ସୂର୍ଯ୍ୟ ଆଦୌ ଦେଖାଗଲେନି । ଆଲୋକବର୍ତ୍ତିକା ଧରାପୃଷ୍ଠ ଛୁଇଁଲାମାତ୍ରେ ଏକ ବିସ୍ଫୋରଣ ସୃଷ୍ଟି ହେଲା । ଆଲୋକବର୍ତ୍ତିକାର ଆଗମନରେ ପ୍ରଥମେ ଉଷ୍ଣବାୟୁ ପ୍ରବାହିତ ହୋଇ ଦେହ ଜଳିଲା । ଏସ୍.ବି.ସ୍ମିନୋଭ ନାମକ ଜଣେ କୃଷକ ଘଟଣାର ଚାକ୍ଷୁଷ ପ୍ରମାଣ ଦେବାକୁ ଯାଇ ବର୍ଣ୍ଣନା କଲେ ଯେ ଭୂପତିତ ତେଜସ୍କ୍ରିୟ ଆଲୋକବର୍ତ୍ତିକାର ପ୍ରଭାବରେ ତାଙ୍କ ଆଖି ବନ୍ଦ ହୋଇଗଲା ଓ ପିନ୍ଧିଥିବା ଲୁଗାଜାମାରେ ନିଆଁ ଲାଗିଯାଇଥିବା ପରି ମନେ ହେଲା । ସେ ଆଖି ଖୋଲନ୍ତେ ଆଲୋକବର୍ତ୍ତିକା ଆଉ ଦେଖାଗଲାନି । ସେ ବେହୋସ ହୋଇପଡ଼ିଲେ ।

ଏହି ବିସ୍ଫୋରଣ ଯୋଗୁଁ ନିକଟସ୍ଥ ନଈ ପଠାରେ ଥିବା ୧୫୦୦ ବଲ୍‌ଗା ହରିଣଙ୍କର ମୃତ୍ୟୁ ହେବା ଓ ବଲ୍‌ଗା ହରିଣ ରକ୍ଷକଙ୍କର ସମସ୍ତ ସିଲଭର ବାସନ ଆଦି ତରଳି ଯାଇଥିବାର ଜଣାପଡ଼ିଲା ।

ଘଟଣାଟି ବୈଜ୍ଞାନିକ ତଥା ଗବେଷକମାନଙ୍କର କର୍ମ ପରିସରକୁ ବ୍ୟାପକ କଲା । ପ୍ରିନ୍ସଟନ ବିଶ୍ୱ ବିଦ୍ୟାଳୟରେ ଗବେଷଣାରତ ଆନ୍ତର୍ଜାତୀୟ ସୁଖ୍ୟାତି ସଂପନ୍ନ ପ୍ରବୀଣ ପଦାର୍ଥ ବିଜ୍ଞାନୀ ଜନ୍ ହ୍ୱିଲର ଏକ ଚାଞ୍ଚଲ୍ୟକର ତଥ୍ୟ ଉଦ୍‌ଘାଟନ କଲେ । ଏହି ତଥ୍ୟ ଅନୁଯାୟୀ ବିଶ୍ୱକ୍ରମେ ସଂକୁଚିତ ହେଉଥିବା ଦ୍ୱାରା ଏହା ଦିନେ ଭୁଷୁଡ଼ି ପଡ଼ିବ । ଫଳରେ ଏହା ଏକ ସାନ୍ଦ୍ରତା ଯୁକ୍ତ ବସ୍ତୁପିଣ୍ଡରେ ପରିଣତ ହେବ । ତାଙ୍କର ସହକର୍ମୀ ରେମୋ ରୁଫିନୀ ଶେଷୋକ୍ତ ବସ୍ତୁ ପିଣ୍ଡକୁ ବ୍ଲାକ୍ ହୋଲ୍ ବା 'କୃଷ୍ଣ ଗର୍ତ୍ତ' ନାମରେ ଅଭିହିତ

କଲେ । ଚଳିତ ଶତାବ୍ଦୀରେ ଅନ୍ୟତମ ଶ୍ରେଷ୍ଠ ଚିନ୍ତାନାୟକ ଆଲବର୍ଟ ଆଇନଷ୍ଟାଇନ୍ ଏରୂପ ଅତ୍ୟଧିକ ସାନ୍ଦ୍ରତା ବସ୍ତୁର ସଂଭାବ୍ୟ ଅବସ୍ଥିତି ସଂପର୍କରେ ସୂଚନା ଦେଇଥିଲେ ।

ଉପରୋକ୍ତ ସିଦ୍ଧାନ୍ତ ସହ ଆହୁରି ଅନେକ ତଥ୍ୟ ପ୍ରକାଶ ପାଇଲା । କେତେକ ମତ ଦେଲେ ଯେ ଉଲ୍‌କା ପ୍ରସ୍ତର ପତନ ଯୋଗୁଁ ସାଇବେରିଆର କ୍ଷୟକ୍ଷତି ହେଲା । ମାତ୍ର ଅନେକ ଖୋଜିବା ପରେ ଉଲ୍‌କା ପ୍ରସ୍ତରର ଧ୍ୱଂସାବଶେଷ ଆଦୌ ଦୃଶ୍ୟମାନ ହେଲାନି । ୧୯୫୦ ମସିହାରେ ପ୍ରକାଶ ପାଇଥିବା ମଧ୍ୟବାୟୁର କେନ୍ଦ୍ରୀୟ ବିସ୍ଫୋରଣ ସତ୍ୟତାକୁ ନେଇ ସାଇବେରିଆରେ କ୍ଷୟକ୍ଷତିର କାରଣ ଅନୁସଂଧାନ କରାଗଲା । ୧୯୫୮ ମସିହା ଓ ୧୯୫୯ ମସିହାରେ ବେତାର ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ବେତାର ତରଙ୍ଗ ଜରିଆରେ ବାୟୁମଣ୍ଡଳର ଅବସ୍ଥାକୁ ପରୀକ୍ଷା ନିରୀକ୍ଷା କରାଯାଇ କୌଣସି ସଠିକ୍ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ପ୍ରାମାଣିକ ତଥ୍ୟାବଳୀ ସଂଗୃହୀତ କରାଯାଉଥିବାବେଳେ ୧୯୬୦ର କ୍ଷୟକ୍ଷତି ସମସ୍ତ ତଥ୍ୟରାଜିକୁ ମିଥ୍ୟା ବୋଲି ପ୍ରମାଣିତ କରୁଥିଲେ ହେଁ କ୍ଷୀପ୍ରଗତିରେ ଧୂମକେତୁ ବାୟୁମଣ୍ଡଳ ଭିତରକୁ ପଶିଆସିବାରୁ ବିସ୍ଫୋରଣ ଘଟିଥିବାର ତଥ୍ୟ ଗ୍ରହଣୀୟ ହେଲା । ଏହାକୁ ପ୍ରମାଣ କରିବା ପାଇଁ ବୈଜ୍ଞାନିକମାନେ ଯୁକ୍ତିକଲେ ଯେ ଧୂମକେତୁର ଆଗମନୀ ଯୋଗୁଁ ସାଇବେରିଆରେ ଏ ଘଟଣା ଘଟିବାର ଅନେକ ଦିନ ପର୍ଯ୍ୟନ୍ତ ଇୟୁରୋପର ଆକାଶ ପାଣ୍ଡୁର ରଙ୍ଗ ଧାରଣ କରିଥିବାର ଦେଖାଯାଇଥିଲା ।

୧୯୬୫ ମସିହାରେ ପ୍ରକାଶ ପାଇଥିବା ତଥ୍ୟ ଅନୁଯାୟୀ ସୌରମଣ୍ଡଳକୁ ଏକ ପ୍ରସ୍ତର ଆକାର ବସ୍ତୁ ହଠାତ୍ ପୃଥିବୀ ଆଡ଼କୁ ଚାଲିଆସିବାରୁ ବାୟୁମଣ୍ଡଳରେ ଏକ ରାସାୟନିକ ଉଦ୍‌ବେଳନ ସୃଷ୍ଟି କଲା । ଦୁଇ ବିରୋଧି ଶକ୍ତିର ସଂପୂର୍ଣ୍ଣ ଅଣୁଜ ଧକ୍କା ଯୋଗୁଁ ରଂଜନ ରଶ୍ମି ନିର୍ଗତ ହେଲା । ତେଣୁ ଦେହ ଜଳିଯିବା ପରି ମନେ ହେଉଥିଲା ଓ ବାୟୁମଣ୍ଡଳ ଉତ୍ତପ୍ତ କରି ଘୂର୍ଣ୍ଣିବାତ୍ୟା ସୃଷ୍ଟିକଲା ।

ସର୍ବ ପ୍ରାଚୀନ ମତବାଦ ଅନୁଯାୟୀ ସାଇବେରିଆରେ ଏକ କ୍ଷୁଦ୍ର ''କୃଷ୍ଣ ଗର୍ଭ'' ଧ୍ୱଂସର ତାଣ୍ଡବ ସୃଷ୍ଟିକଲା । ବୈଜ୍ଞାନିକମାନଙ୍କ ଗବେଷଣାମତେ ଏହି କ୍ଷୁଦ୍ର 'କୃଷ୍ଣଗର୍ଭ' ସୌରମଣ୍ଡଳର ତାରକା ରାଜ୍ୟରୁ ହିଁ ସୃଷ୍ଟି ହୋଇଛି ।

''କୃଷ୍ଣଗର୍ଭ'' ସଂପର୍କେ କୌଣସି ନିର୍ଭରଯୋଗ୍ୟ ସତ୍ୟ ଆବିଷ୍କୃତ ହୋଇନାହିଁ । ଅଧିଭୌତିକ ଦୃଷ୍ଟିକୋଣରୁ ବହୁବିଧ ଯୁକ୍ତି ପରିବେଷ୍ଟିତ ତଥ୍ୟାବଳୀମାନ ଉପସ୍ଥାପିତ କରାଯାଇଛି । ସାର୍ବତ୍ରିକ ଆପେକ୍ଷିକ ତତ୍ତ୍ୱରେ ମହାକର୍ଷଣୀୟବଳ ଆଲୋକରଶ୍ମି ଉପରେ ପ୍ରଭାବ ବିସ୍ତାର କରେ । ଗୋଟିଏ ବସ୍ତୁ ସଂକୁଚିତ ହେଲେ ଏପରି ଏକ ସାନ୍ଦ୍ରତାଯୁକ୍ତ ବସ୍ତୁରେ ପରିଣତ ହୁଏ ଯେ, ଶକ୍ତିଶାଳୀ ମହାକର୍ଷଣୀୟ ପ୍ରଭାବରେ ଆଲୋକରଶ୍ମି ପଦାକୁ ନିର୍ଗତ ହୋଇପାରେନି, ଆପେକ୍ଷିକ ତତ୍ତ୍ୱାନୁଯାୟୀ ଏହା ଅଦୃଶ୍ୟ ଓ ''କୃଷ୍ଣ ଗର୍ଭ' ନାମରେ ଅଭିହିତ ।

ଏହି କୌତୁହଳୋଦ୍ଦୀପକ ତଥା ଚିତ୍ତାକର୍ଷକ ବିଜ୍ଞାନ ତଥ୍ୟାଶ୍ରୟୀ ପ୍ରବନ୍ଧ ବୈଜ୍ଞାନିକମାନଙ୍କ ମନରେ ତୁମୂଳ ଆଲୋଡ଼ନ ସୃଷ୍ଟି କଲା । ବ୍ରିଟିଶ୍ ବୈଜ୍ଞାନିକ ପି.ଏମ.ଡିର୍‌ଚ୍ଚ ୧୯୨୮ ମସିହାରେ ପ୍ରକାଶ କରିଥିବା ପ୍ରବଂଧ ଅନୁଯାୟୀ ପ୍ରତ୍ୟେକ ବସ୍ତୁର ଏକ ବିପରୀତ ବସ୍ତୁ ବିଦ୍ୟମାନ । ଏହି ବସ୍ତୁଗୁଡ଼ିକର ଅଣୁଗୁଡ଼ିକର ଏକତ୍ରୀକରଣରେ ଉଦ୍‌ଜାନ ପରମାଣୁମାନଙ୍କର ସଂଯୋଜନ ପ୍ରକିୟାରେ ହିଲିୟମ ପରମାଣୁ ସୃଷ୍ଟିହେବା ସଂଗେ ସଂଗେ ପ୍ରଚୁର ପରିମାଣର ଶକ୍ତି ଉତ୍ପନ୍ନ କରେ ।

ଉପରୋକ୍ତ ତଥ୍ୟ ନୋବେଲ ପୁରସ୍କାର ବିଜେତା ବୈଜ୍ଞାନିକ ଉଇଲ୍‌ଓ୍ୱାଡ୍ ଏଫ୍ ଲିବେଙ୍କ ଦ୍ୱାରା ପରୀକ୍ଷଣ ପରେ ଜଣାଗଲା ଯେ ପ୍ରତ୍ୟେକ ବିରୋଧ ଧର୍ମ ଦୁଇବସ୍ତୁ ବାୟୁମଣ୍ଡଳରେ ଏକତ୍ରିତ ହେଲେ ଯେଉଁ ଶକ୍ତି ଉତ୍ପନ୍ନ ହୁଏ ତାହା ଏକ ଆଟମ୍‌ବମ୍‌ର ଶକ୍ତି ସହ ସମାନ ।

ଲିବେ ଓ ତାଙ୍କର ସହକର୍ମୀ ସାଇବେରିଆର ବିସ୍ମୟ ରୋମାଞ୍ଚକୁ ନିରୀକ୍ଷଣ କରି ମତଦେଲେ ଯେ, ବିପରୀତ ବସ୍ତୁ ସଂଘର୍ଷଜନିତ ପ୍ରଭାବରୁ ମାତ୍ର ଏକ ଶତାଂଶ ସାଇବେରିଆରେ ଅନୁଭୂତ ହୋଇଥିବା ଦୃଷ୍ଟେ ଏହା ବିପରୀତଧର୍ମୀ ବସ୍ତୁ ସଂଘର୍ଷରୁ ଘଟିନାହିଁ ।

୧୯୭୩ ମସିହାରେ ଟେକ୍ସୋ ବିଶ୍ୱବିଦ୍ୟାଳୟରେ ଦୁଇ ବୈଜ୍ଞାନିକ ଏ.ଏ. ଜ୍ୟାକସନ୍ ଓ ମିଛାଲ ପି. ର୍‌ୟାନ୍. ଜନିଷ୍ଟ ମତ ଦେଲେଯେ ୧୯୦୮ ମସିହାରେ ସାଇବେରିଆରେ ସଂଗଠିତ ହୋଇଥିବା କ୍ଷୟକ୍ଷତି ଏକ କ୍ଷୁଦ୍ର 'କୃଷ୍ଣ ଗର୍ତ୍ତ' ଯୋଗୁଁ ହୋଇଛି । ଏହି କ୍ଷୁଦ୍ର ''କୃଷ୍ଣ ଗର୍ତ୍ତ'' ଏକ ଅତିକାୟ ନକ୍ଷତ୍ର ମୃତ୍ୟୁ ବରଣ କରିବାପରେ ସୌରମଣ୍ଡଳରୁ ଭୂପୃଷ୍ଠକୁ ଆସିଥିବାରୁ ସୃଷ୍ଟି ହୋଇଥିବା ମହାକର୍ଷଣୀୟ ପ୍ରଭାବରୁ ଜନ୍ମ ନେଇଛି ।

ପରବର୍ତ୍ତୀ ଅବସ୍ଥାରେ ବୈଜ୍ଞାନିକମାନେ ଏହି ତଥ୍ୟକୁ ଗ୍ରହଣ କଲେନି । ସେମାନେ ଯୁକ୍ତି କଲେ ଯେ ଯଦି ଏତାଦୃଶ ''କୃଷ୍ଣ ଗର୍ତ୍ତ'' ସାଇବେରିଆରେ ବିସ୍ଫୋରଣ ତଥା ଘୂର୍ଣ୍ଣିବାତ୍ୟା ସୃଷ୍ଟିକଲା ତାହାଲେ ପୃଥିବୀର ଅନ୍ୟସ୍ଥାନରେ କୌଣସି ପ୍ରଭାବ ପକାଇଲା ନାହିଁ କାହିଁକି ?

''କୃଷ୍ଣଗର୍ତ୍ତ'' ବୈଜ୍ଞାନିକ ମହଲରେ ଆଲୋଚନାର କେନ୍ଦ୍ରବିନ୍ଦୁଭାବେ ପରିଗଣିତ ହେଲା । ଏ ସଂପର୍କେ ବହୁ ପୂର୍ବରୁ ପ୍ରଚଳିତ ଥିବା ଜ୍ୟୋତିର୍ବିଜ୍ଞାନ ଆଧାରିତ ''କୃଷ୍ଣଗର୍ତ୍ତ'' ଉପସ୍ଥିତିକୁ କେତେକ ସ୍ୱୀକାର କଲେ । ୧୮୪୪ ମସିହାରେ ଏଫ୍. ଡବ୍ଲ୍ୟୁ. ବେସ୍ଲେ ଆବିଷ୍କାର କଲେ ଯେ ଅତ୍ୟୁଜ୍ଜଳ ନକ୍ଷତ୍ରର ପଥ ନିର୍ଦ୍ଦିଷ୍ଟ ନୁହେଁ ଓ ଏହା ଦୁଇଟି ନକ୍ଷତ୍ରର ସମାହାର । ୧୯ବର୍ଷ ପରେ ଅର୍ଥାତ୍ ୧୮୬୩ ମସିହାରେ ଆମେରିକାର ଦୂରବିକ୍ଷଣଯନ୍ତ୍ର ନିର୍ମାତା, ଆଲ୍‌ଭେନ କ୍ଲାର୍କଙ୍କ ଦ୍ୱାରା ପ୍ରମାଣିତ ହେଲା ଯେ ସର୍ବୋଜ୍ଜଳ ସାଇରସ ନକ୍ଷତ୍ର ଗୋଟିଏ ନୁହେଁ ଦୁଇଟି ନକ୍ଷତ୍ରର ସମାହାର । ଉଭୟେ ଧବଳବର୍ଣ୍ଣର ଓ ଏହା ସାଧାରଣ

ଦୃଷ୍ଟି ବଳୟଠାରୁ ବହୁ ଉର୍ଦ୍ଧ୍ୱରେ ଥିବାରୁ ଏତେ କ୍ଷୁଦ୍ରଭାବେ ଦୃଶ୍ୟ ହେଉଥିଲା ଯେ ଏହାକୁ ''ଶୁଭ୍ର-ବାମନ'' ତାରା ନାମରେ ନାମିତ କରାଗଲା ।

ବ୍ରିଟିଶ ବୈଜ୍ଞାନିକ ଆର. ଏଚ. ପଠାଓଲର ଓ ଭାରତୀୟ ବୈଜ୍ଞାନିକ ସୁବ୍ରମଣ୍ୟମ ଚନ୍ଦ୍ରଶେଖର ଉପସ୍ଥାପିତ କରିଥିବା ତଥ୍ୟାନୁଯାୟୀ କୌଣସି ନକ୍ଷତ୍ରର ଇନ୍ଧନ ଛଳି ଶେଷ ହେବା ପରେ, ସଂକୋଚନ ପରିଣତି ସ୍ୱରୂପ ଆଭ୍ୟନ୍ତରୀଣ ଉଦ୍‌ଜାନ ପରମାଣୁଗୁଡ଼ିକ ପରସ୍ପରସହ ସଂଯୋଜିତ ହେବାକୁ ପ୍ରବୃତ୍ତ ହୁଅନ୍ତି । ଫଳରେ ନକ୍ଷତ୍ରଟିର ମୃତ୍ୟୁ ଘଟେ । ଚନ୍ଦ୍ରଶେଖର ବିଶ୍ୱାସ କରନ୍ତି ଯେ, ସୂର୍ଯ୍ୟଠାରୁ ୫୦ଗୁଣ ବଡ଼ ନକ୍ଷତ୍ରମାନ ଏତେ ପ୍ରଖରଭାବେ ଆଲୋଡ଼ିତ ହେଉଛନ୍ତି ଯେ ଏହାର ଆୟୁଷ ମାତ୍ର ୧୦ରୁ ୨୦ ନିୟୁତ ବର୍ଷରେ ସୀମିତ ହେଉଛି ଓ ଅସଂଖ୍ୟ ତାରକାମାନଙ୍କ ଭାଗ୍ୟରେ ଏହାହିଁ ଘଟିଛି । ମାତ୍ର ବୃହତ୍ତମ ବସ୍ତୁତ୍ୱ ସଂପୂର୍ଣ୍ଣ ତାରକା ସୌରମଣ୍ଡଳର ଉର୍ଦ୍ଧ୍ୱଦେଶକୁ ଯାଇପାରିନି ।

ଏହି ତଥ୍ୟ ଏକ ପ୍ରଶ୍ନ ସୃଷ୍ଟି କରିଛି ଯେ ମୃତ ନକ୍ଷତ୍ରଗୁଡ଼ିକ ଯାଉଛନ୍ତି କୁଆଡ଼େ ?

ଆଟମବମ୍ବ ନିର୍ମାଣର ଅଗ୍ରଣୀ ବୈଜ୍ଞାନିକ ଜେ. ରୋବର୍ଟ, ତାରକାମାନଙ୍କର ମୃତ୍ୟୁ ସମ୍ପର୍କେ ଅନୁଧ୍ୟାନ କରି (ତାରକା ମାନଙ୍କର ଅଭ୍ୟନ୍ତରୀଣ ପ୍ରତିକ୍ରିୟା) ଚନ୍ଦ୍ରଶେଖର ଓ ଫାଓଲରଙ୍କ ମତବାଦ ସହ ଏକମତ ହେଲେ । ଆଇନଷ୍ଟାଇନଙ୍କ ସାନ୍ଦ୍ରତା ଜନିତ ତଥ୍ୟ ବୈଜ୍ଞାନିକମାନଙ୍କୁ ତାରକାମାନଙ୍କର ରହସ୍ୟ ଅନୁଧ୍ୟାନ ପାଇଁ ସହାୟତା କଲା ।

ବିଜ୍ଞାନର ଉନ୍ନତି ଫଳସାର ତାରକାର ଅବସ୍ଥିତି ସଂପର୍କେ ସୂଚନା ଦେଲା ଓ ଏହା ''କୃଷ୍ଣ ଗର୍ତ୍ତ'' ଉପସ୍ଥିତି ଧାରଣାକୁ ଦୃଢ଼ୀଭୂତ କଲା । ମାତ୍ର ଜ୍ୟୋର୍ତିବିଜ୍ଞାନୀଗଣ ଏଥିସହ ଏକମତ ହେଲେନି । ସେମାନେ ଯୁକ୍ତି କଲେ ଯେ ହୁଏତ ଆକାଶରେ କ୍ଷୁଦ୍ର କଣା ଅଛି ନତୁବା ଭୂମଣ୍ଡଳରେ କ୍ଷୁଦ୍ର କଣା ଅଛି ।

ସାଇବେରିଆର ସଂଗଠିତ ହୋଇଥିବା ଘୂର୍ଣ୍ଣିବାତ୍ୟାକୁ ନେଇ ବୈଜ୍ଞାନିକ ମହଲରେ, ଏ ଅବଧି ଅନେକ ପରୀକ୍ଷା ନିରୀକ୍ଷା ଚାଲିଥିଲେ ବି କୌଣସ ସଠିକ୍ ଉତ୍ତର ମିଳିନି । ଯଦି ''କୃଷ୍ଣଗର୍ତ୍ତ'' ଥାଏ ଓ ଏହା ସାଇବେରିଆରେ ପତିତ ହୋଇନଥାଏ ତାହାଲେ ସାଇବେରିଆରେ ହଠାତ୍ ଅନୁଭୂତ ହୋଇଥିବା ଧ୍ୱଂସର ତାଣ୍ଡବଲୀଳାର ପ୍ରକୃତ କାରଣ କ'ଣ ଜାଣିବାକୁ ଆହୁରି ଅନେକ ଦିନ ଅପେକ୍ଷା କରିବାକୁ ପଡ଼ିବ ।



# ଏଲ୍‌ଡୋରାଡୋ

*ଦକ୍ଷିଣ ଆମେରିକାର ସିଟା ହ୍ରଦ ସତରେ କ'ଣ ସେଇ ବହୁ କଳ୍ପିତ ସୁବର୍ଣ୍ଣ ହ୍ରଦ ! ଯୋଉଠି ଭରି ରହିଚି ଅକଳନ ସୁବର୍ଣ୍ଣ ପ୍ରତିମା, ଆଉ ପୁଣି ଖାଲି ଗଦା ଗଦା ସୁନା !*

*ତେବେ ସେଠି ସୁନା ଥାଉ କି ନଥାଉ, ମାଟିତଳୁ ମିଳିଚି ଆଶ୍ଚର୍ଯ୍ୟମୟ ସୁବର୍ଣ୍ଣ ପ୍ରତିମା । ଶତାବ୍ଦୀ ଶତାବ୍ଦୀ ଧରି ମଣିଷ ଖୋଳି ଚାଲିଚି ମାଟି ! ପ୍ରଶ୍ନ ଉଠେ, ଏହାର ଶେଷ କୋଉଠି ? କୋଉଠି ଏହାର ଅନ୍ତିମ ପରିଣତି ?*

---

୧୯୬୯ ମସିହାର କଥା । ଦକ୍ଷିଣ ଆମେରିକାର ବୋଗଟା ନିକଟରେ କେତେକ କୃଷିଜୀବୀ ନିଜ କ୍ଷେତରେ ମାଟି ଖୋଳୁଥିବା ବେଳେ ନରମ ମାଟିର ଆସ୍ତରଣ ତଳୁ ଏକ କଠିନ ବସ୍ତୁର ଆଘାତରେ କୋଦାଳ ଅଟକି ଗଲା । ଶ୍ରମିକମାନେ ସ୍ଥାନଟିକୁ ଖୋଳି ମାଟିତଳୁ ଆଶ୍ଚର୍ଯ୍ୟ ଧରଣର ଏକ ପ୍ରତିମୂର୍ତ୍ତି ବାହାର କଲେ । କାହିଁ କେତେବର୍ଷତଳୁ ପ୍ରତିମୂର୍ତ୍ତିଟି ମାଟିତଳେ ପୋତିହୋଇ ରହିଥିଲେ ବି ଟିକିଏ କଳଙ୍କି ଲାଗିନି କିମ୍ୱା ମାଟି ଖାଇନି । ସୂର୍ଯ୍ୟ କିରଣରେ ଝଲମଲ କରୁଥିବା ପ୍ରତିମୂର୍ତ୍ତିଟିକୁ ପାଇ ଶ୍ରମିକମାନେ କେବଳ ଆଶ୍ଚର୍ଯ୍ୟ ହେଲେନି, ଆନନ୍ଦରେ ଚିତ୍କାର କରିବାକୁ ଲାଗିଲେ, ''ଏଲଡୋରାଡୋ''- ''ଏଲଡୋରାଡ଼ୋ'' ।

ସେଠାକାର ସ୍ଥାନୀୟ ଭାଷାରେ ''ଏଲଡୋରାଡ଼ୋ'' ଶବ୍ଦର ଅର୍ଥ ସୁନାର ମଣିଷ । ମାଟିତଳୁ ସୁନେଲି ରଂଗର ପ୍ରତିମୂର୍ତ୍ତିଟିରେ ଗୋଟିଏ ଉଡୁପ ଉପରେ ଜଣେ ରାଜାଙ୍କ ସହ ଦେହରକ୍ଷୀମାନେ ଦଣ୍ଡାୟମାନ ହୋଇଥିବାର ମୂର୍ତ୍ତିମାନ ଏକତ୍ରିତ ଥିଲା ଓ ପ୍ରତିମୂର୍ତ୍ତିଟିର ସମସ୍ତ ଅଂଶ ସୁନା ହୋଇଥିବା ପରି ମନେ ହେଉଥିଲା ।

ଶ୍ରମିକମାନଙ୍କର ଆନନ୍ଦ ଉଲ୍ଲାସର ଧ୍ୱନି ସ୍ଥାନୀୟ ଲୋକମାନଙ୍କୁ ସେଠାରେ ପହଞ୍ଚାଇ ଦେଲା । ସମସ୍ତଙ୍କ ନିଷ୍ପତ୍ତି କ୍ରମେ ପ୍ରତିମୂର୍ତ୍ତିକୁ ସଂଗ୍ରହାଳୟକୁ ନିଆଗଲା । ଜଣାଗଲା ଉକ୍ତ ସଦୃଶ ପ୍ରତିମୂର୍ତ୍ତିଟିଏ ପୂର୍ବରୁ ସଂଗ୍ରାହଳୟରେ ଅଛି, ଯାହାକି ଉନବିଂଶ ଶତାବ୍ଦୀରେ ସଂଗ୍ରାହଳୟକୁ ଅଣାଯାଇଥିଲା । ପୂର୍ବରୁ ସଂଗ୍ରାହଳୟରେ ସୁରକ୍ଷିତ ଭାବେ ରଖାଯାଇଥିବା ପ୍ରତିମୂର୍ତ୍ତିଟିକୁ ବ୍ରିଟେନ୍ ଓ ସ୍ପେନର ''ସୁବର୍ଣ୍ଣ ରାଜ୍ୟ'' ଅନୁସଂଧାନକାରୀ



ଉଦ୍ଧାର କରାଯାଇଥିବା
ସୁନାର ପ୍ରତିମୂର୍ତ୍ତି

ଦଳ ସିଟା ହ୍ରଦ କୂଳରୁ ପାଇଥିଲେ । ସୁବର୍ଣ୍ଣ ରାଜ୍ୟ ଅନୁସଂଧାନରେ ବ୍ରିଟେନ ଓ ସ୍ପେନର ଉତ୍ସୁକ ବ୍ୟକ୍ତିଗଣ ଅନେକ ଖୋଜିବା ପରେ ପ୍ରତିମୂର୍ତ୍ତିଟି ବ୍ୟତୀତ ଆଉ କିଛି ପାଇନଥିଲେ । ଉନବିଂଶ ଶତାବ୍ଦୀରେ ଅନୁସଂଧାନକାରୀଙ୍କର ସମସ୍ତ ଶ୍ରମ ପଣ୍ଡ ହେବାପରେ ଜନମାନସ ସୁବର୍ଣ୍ଣ ରାଜ୍ୟ ସଂପର୍କେ ଭୁଲି ଯାଇଥିଲେ । ମାତ୍ର କୃଷି ଶ୍ରମିକଙ୍କ ଦ୍ବାରା ପ୍ରାପ୍ତ ସୁନେଲି ପ୍ରତିମୂର୍ତ୍ତିଟି ପୁନର୍ବାର ସୁବର୍ଣ୍ଣ ରାଜ୍ୟର ପରିକଳ୍ପନାକୁ ଉଜ୍ଜୀବିତ କଲା । ପ୍ରକୃତରେ ସୁବର୍ଣ୍ଣ ରାଜ୍ୟଟିଏ ଥାଉକି ନଥାଉ ଧ୍ୱଂସେଇ ଯାଇଥିବା ସୁବର୍ଣ୍ଣ ରାଜ୍ୟର ଅନ୍ବେଷଣ ପୁଣି ଆରମ୍ଭ ହେଲା ।

ଅତି ପ୍ରାଚୀନ କାଳରେ ମଣିଷ ମନରେ ଧନସଂପଦ ପାଇଁ ଆଦୌ ଲୋଭ ନଥିଲା । ମାତ୍ର ୧୫୩୦ ମସିହାରେ ସ୍ପେନର ସାହାସୀ ଯୋଦ୍ଧା ଫ୍ରିନ୍ସିକୋ ପିଜାରେ ଇନ୍‌କା ସାମ୍ରାଜ୍ୟର ସୁନାଭଣ୍ଡାର ଲୁଣ୍ଠନଠାରୁ ମଣିଷ ମନରେ ଧନ ଦୌଲତ ପାଇଁ ଲୋଭ ଆସିଲା । ୧୫୩୫ ମସିହାରେ ସିବାସ୍ତିଆନ ଡି ବ୍ଲିକାବିର ଜଣେ ଭାରତୀୟଙ୍କ ଠାରୁ ଶୁଣିଲେଯେ କିଛି ବର୍ଷ ପୂର୍ବେ ଜଣେ ରାଜା ଥିଲେ । ସେ ପ୍ରତିଦିନ ନିଜ ଦେହରେ ସୁନାଗୁଣ୍ଡ ଲେସିହୋଇ ପବିତ୍ର ପାର୍ବତୀ ହ୍ରଦରେ ଗାଧୋଉଥିଲେ, ରାଜାଙ୍କର ଏହି ଖିଆଲି ଗାଧୁଆ ହ୍ରଦର ଅଧିକାଂଶ ଅଂଶକୁ ସ୍ୱର୍ଣ୍ଣ ଗୁଣ୍ଡରେ ଭରପୂର କରିଥିଲା । ତା ଛଡ଼ା ପ୍ରତ୍ୟହ ରାଜା ନିଜ ଶରୀରକୁ ପୋଷାକ ପିନ୍ଧିବା ପରି ସୁବର୍ଣ୍ଣ ଅଳଙ୍କାରରେ ଛାଉଣୀ କରୁଥିଲେ ଓ ଅନେକ ସୁବର୍ଣ୍ଣ ପ୍ରତିମୂର୍ତ୍ତି ତିଆରିକରି ତାଙ୍କ ରାଜ୍ୟର ବିଭିନ୍ନ ମଂଦିରରେ ରଖିଥିଲେ । କାରଣ ସେ ରାଜାଙ୍କ ଭଣ୍ଡାରରେ ଅନେକ ସୁନା ମହଜୁଦ ଥିଲା । ବକ୍ତାଜଣଙ୍କ ରାଜାଙ୍କ ନାମ ଓ ରାଜ୍ୟର ନାମ ପ୍ରକାଶ କରିପାରୁ ନଥିଲେ ହେଁ ପୃଥିବୀ ପୃଷ୍ଠରେ କୌଣସି ସ୍ଥାନରେ ଅନେକ ସୁନା ଏକତ୍ରିତ ମହଜୁଦ ଥିବାର ଦର୍ଶାଇଲେ ।

ଭାରତୀୟ ଜଣଙ୍କ ଏହି ଉପାଖ୍ୟାନଟି ତାଙ୍କ ବୁଢ଼ୀମାଠାରୁ ଶୁଣିଥିବା କାହାଣୀକୁ

ମନେପକାଇ ବ୍ଲିବାରଙ୍କ ମନବିନୋଦ ପାଇଁ କହିଥାନ୍ତୁ କିମ୍ବା ଏଥିରେ କିଛି ବାସ୍ତବତା ଅଛି ବୋଲି ବିଚାରକୁ ନ ନେଇ ବ୍ଲିକାବର ଆତ୍ମବିସ୍ମୃତ ହୋଇ ପଡ଼ିଲେ । ଭାରତୀୟ ଜଣଙ୍କ ତଥ୍ୟ ଉପରେ ବିଶ୍ୱାସ କରି ଖିଆଲି ରାଜାଙ୍କୁ ନାମକରଣ କଲେ "ଏଲ୍‌ଡୋରାଡୋ" ।

କାଳକ୍ରମେ ଇତିହାସ ପୃଷ୍ଠାରୁ ଏଲ୍‌ଡୋରାଡ଼ୋ ସଂପର୍କେ ଅବଗତ ହୋଇ ଅନୁସଂଧାନକାରୀ ନିଜର ଅନୁସଂଧାନ ଆରମ୍ଭ କଲେ । ସୁବର୍ଣ୍ଣମୟ ହ୍ରଦ, ସୁବର୍ଣ୍ଣ ପ୍ରତିମୂର୍ତ୍ତି ବା ଗଦାଏ ସୁନାର ଭଣ୍ଡାର ପାଇ ନିଜର ଧନ ସଂପଦ ବଢ଼ାଇବେ । ଅନୁସଂଧାନକାରୀ ଏହି ଏଲ୍‌ଡୋରାଡ଼ୋ ଶବ୍ଦକୁ ଭିନ୍ନ ଭିନ୍ନ ଅର୍ଥରେ ଗ୍ରହଣ କଲେ । କିଏ କହିଲା 'ଏଲ୍‌ଡେରୋରଡ଼ା' ଶବ୍ଦର ଅର୍ଥ ସୁବର୍ଣ୍ଣ ମଣିଷ ତ ଆଉ କିଏ କହିଲା 'ସୁବର୍ଣ୍ଣ ରାଜା' । ଗଦାଏ ସୁନାର ମାଲିକ ହେବା ପାଇଁ ଅନୁସଂଧାନକାରୀ ଘୂରିବୁଲିଲେ ଦେଶରୁ ଦେଶାନ୍ତର । କେଉଁଠୁ ହେଲେ ପାଇଯିବେ ସୁବର୍ଣ୍ଣ ରାଜ୍ୟ ବା ଖାଣ୍ଟି ସୁନାର ବିରାଟ ଗନ୍ତାଘର । ମରୁଭୂମିରେ ମରୁଯାତ୍ରୀଟିଏ ମୁନ୍ଦିଏ ପାଣି ପାଇଁ ମରୀଚିକା ପଛରେ ଧାଇଁବା ପରି ଅନୁସଂଧାନକାରୀ ତାଙ୍କର ସମସ୍ତ ଜୀବନ ଓ ଗଚ୍ଛିତ ଧନ ଦୌଲତକୁ ବିକ୍ରୟକରି ଖୋଜି ଚାଲିଲେ ସୁନା, ମୁଣ୍ଡା ମୁଣ୍ଡା ଗଦାଏ ସୁନା— ପର୍ଯ୍ୟାପ୍ତ ସୁନା ।

୧୫୩୬ ମସିହାରେ ଗୋନବାଲୋ ବିମାନେଜ ଡି. କୋସଦା ୯୦୦ ଲୋକଙ୍କୁ ସାଙ୍ଗରେ ଧରି କଲମ୍ବିଆର ଦକ୍ଷିଣ ଉପକୂଳବର୍ତ୍ତୀ ଅନ୍ତର୍ଗତ ସନ୍ତ ମର୍ତଠାରୁ ସୁବର୍ଣ୍ଣ ରାଜ୍ୟ ଅନ୍ୱେଷଣରେ ଯାତ୍ରା ଆରମ୍ଭ କଲେ । ତାଙ୍କର ଏହି ଅନ୍ୱେଷଣ ଯାତ୍ରା ଖୁବ୍ ବିପଦ ଶଙ୍କୁଳ ହୋଇପଡ଼ିଲା । ଛିନିହାସଠାରେ ପହଁଚିବା ପୂର୍ବରୁ ଶତ୍ରୁପକ୍ଷର ଆକ୍ରମଣ, ବନ୍ୟଜନ୍ତୁମାନଙ୍କର ଆକ୍ରମଣ ସାଙ୍ଗକୁ ସହକର୍ମୀମାନଙ୍କର ଶାରୀରିକ ଅସୁସ୍ଥତା ଅନ୍ତରାୟ ସୃଷ୍ଟିକଲା । ଏଥିରେ କୋସଦା ଭାଙ୍ଗି ପଡ଼ିନଥିଲେ । ଛିନିହାସରେ ପହଁଚି କୋସଦା ସୁବର୍ଣ୍ଣ ମଣିଷର କୌଣସି ଚିହ୍ନବର୍ଣ୍ଣ ଦେଖିଲେନି । ମାତ୍ର ଅଧିକ କିଛି ତଥ୍ୟ ପାଇଲେ । ଜଣେ ଭାରତୀୟ ପଥ ପ୍ରଦର୍ଶକଙ୍କୁ ସାଙ୍ଗରେ ଧରି ଗୁଆଟିଭିଟା ହ୍ରଦ ଅଭମୁଖେ ନିଜର ଯାତ୍ରା ଆରମ୍ଭ କଲେ । କୋସଦା ହ୍ରଦ ନିକଟରେ ପହଁଚି ଦେଖିଲେ ଏହା ସମୁଦ୍ର ଜଳପତନଠାରୁ ୯୦୦୦ ଫୁଟ ଉଚ୍ଚ ଓ ହ୍ରଦଟି ଏକ ଆଗ୍ନେୟଗିରିର ଧ୍ୱଂସାବଶେଷ । କୋସଦା ଓ ତାଙ୍କର ଅବଶିଷ୍ଟ ୨୦୦ ସହକର୍ମି ଅନେକ ଅନୁସଂଧାନ ପରେ ନା ପାଇଲେ ସୁବର୍ଣ୍ଣ ମଣିଷର ପ୍ରତିମୂର୍ତ୍ତି ନା ସୁବର୍ଣ୍ଣ ରାଜ୍ୟର ଚିହ୍ନବର୍ଣ୍ଣ ।

କିଛିଦିନ ଅବସରପରେ ପୁର୍ନବାର ୧୫୬୮ ମସିହାରେ କୋସଦା ସେଇ ହ୍ରଦ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ୩ ବର୍ଷ କାଳ ୨୮୦ ସହକର୍ମୀଙ୍କୁ ଧରି ଅନୁସଂଧାନ ବୃଥା ହେବାପରେ କୋସଦା ନିଜର ଅନୁସଂଧାନ କାର୍ଯ୍ୟରୁ ଅବ୍ୟାହତି ନେଲେ ।

କୋସଦାଙ୍କ ପରି ଅନେକ ସୁବର୍ଣ୍ଣ ଲିପ୍ସୁ ଦୀର୍ଘ ୪୦୦ ବର୍ଷ ଅନୁସଂଧାନପରେ ସୁବର୍ଣ୍ଣ ରାଜ୍ୟ ବା ସୁବର୍ଣ୍ଣ ମଣ୍ଡପ ପ୍ରତିମୂର୍ତ୍ତିର ଲେଶମାତ୍ର ସଂଧାନ ପାଇଲେନି । ଅପରନ୍ତୁ ଏହି ଅନୁସଂଧାନ ନିମନ୍ତେ ବହୁଳ ଅର୍ଥ ବ୍ୟୟ କରି ଚାଲିଲେ । ୧୬ଶ ଶତାବ୍ଦୀ ଶେଷକୁ ଅନୁସଂଧାନ କାର୍ଯ୍ୟ କଲମ୍ବିଆ ପରିବର୍ତ୍ତେ ଗୁନିଆ ଅଧିବାସୀଙ୍କୁ ପ୍ରଭାବିତ କଲା ।

୧୫୮୪ ମସିହାରେ ଅନ୍ତୋନିଓ ଡି.ବିରୋ ଗୁନିଆର ଉପକୂଳବର୍ତ୍ତୀ ପାର୍ବତ୍ୟ ଅଂଚଳରେ ଖୋଜିବା କାର୍ଯ୍ୟ ଆରମ୍ଭ କଲେ । ତାଙ୍କର ବିଶ୍ୱାସଥିଲା ଯେ ସୁବର୍ଣ୍ଣ ମଣିଷମାନଙ୍କର ପ୍ରତିମୂର୍ତ୍ତି ନିଶ୍ଚୟ ପାହାଡ଼ ପର୍ବତ ପରିବେଷ୍ଟିତ ହ୍ରଦରୁ ହିଁ ମିଳିବ । କିନ୍ତୁ ୨ୟ ଥର ୧୫୮୫ ରୁ ୧୫୮୮ ପର୍ଯ୍ୟନ୍ତ ତାଙ୍କର ଅନୁସଂଧାନ ବିଫଳ ହେଲା ।

୧୫୯୧ ମସିହାରେ ବିରୋ ଅନୁସଂଧାନ ଆରମ୍ଭ କଲେ । ଏଲ୍‌ଡୋରାଡୋ ଅନୁସଂଧାନ ପାଇଁ ଟ୍ରିନିଦବାଦ ଦ୍ୱୀପରେ ଏକ ଶିବିର ବସାଇଲେ । ଏଲିଜାବେଥ-ପ୍ରଥମଙ୍କ ପାଇଁ ନୂତନ ଧାତୁ ସଂପତ୍ତିର ଅନୁସଂଧାନରେ ଥିବା ସାର୍ ୱାଲଟର ରିଗ୍‌ଙ୍କ ସହ ଭେଟ ହେଲା । ରିଗ୍, ବିରୋଙ୍କ ଠାରୁ ପରିକଳ୍ପିତ ସୁନାଗଦା ଏକତ୍ରିତ ମିଳିବାର ଜାଣିବାପରେ ‘‘ଦି ଡିସକଭରି ଅଫ୍ ଦି ଏମ୍ପାୟାର ଅଫ୍ ଗୁଆନା ।’’ ନାମକ ପୁସ୍ତକଟିଏ ପ୍ରକାଶ କଲେ । ଆଦୌ ବାସ୍ତବତା ନଥିଲେ ହେଁ ପୁସ୍ତକରେ ଥିବା ବର୍ଣ୍ଣନା ବହୁ ଲୋକଙ୍କୁ ପ୍ରଭାବିତ କଲା ।

ରାଣୀ ଏଲିଜାବେଥ୍– ପ୍ରଥମ ୧୬୦୩ରେ ମୃତ୍ୟୁବରଣ କଲେ ଓ ରାଜନୈତିକ କାର୍ଯ୍ୟରେ ତ୍ରୁଟି ବିଚ୍ୟୁତି ଅପରାଧରେ ରିଗ୍ ଆଜୀବନ କାରାରୁଦ୍ଧ ହେଲେ ହେଁ ସାମୟିକ ଦଣ୍ଡାଦେଶରୁ ଗଦାଏ ସୁନା ପ୍ରାପ୍ତିର ଅନ୍ୱେଷଣ କାର୍ଯ୍ୟ କରି ଅକୃତକାର୍ଯ୍ୟ ହେଲେ । ଏହା ତାଙ୍କୁ ୧୬୧୮ ମସିହାରେ ଫାଶୀ ଖୁଣ୍ଟରେ ଝୁଲାଇଲା ।

ରିଗ୍‌ଙ୍କ ମୃତ୍ୟୁଦଣ୍ଡ ଅନୁସଂଧାନକାରୀଙ୍କୁ ନିରୁତ୍ସାହିତ କଲାନି । ଅଷ୍ଟାଦଶ ଶତାବ୍ଦୀ ଶେଷକୁ ସୁବର୍ଣ୍ଣ ରାଜ୍ୟର ଅନୁସଂଧାନ କାର୍ଯ୍ୟ ପୁନର୍ବାର ଆରମ୍ଭ ହେଲା । ରିଗ୍‌ଙ୍କ ସଂବାଦପତ୍ରକୁ ଭିତ୍ତିକରି ଅନେକ ଅନୁସଂଧାନକାରୀ ଦଳ ନିଜ ଚେଷ୍ଟାରେ ବିଫଳ ହେଲେ । ପରେ ପରେ ସ୍ପେନର ଶେଷ ଅନୁସଂଧାନକାରୀ ବିହ୍ ଦି ଲା ଫୁଣ୍ଟି ଉତ୍ତର ଭେଞ୍ଜୁଆଲାଠାରେ ନିଜର ଅନୁସଂଧାନ କାର୍ଯ୍ୟ ଆରମ୍ଭ କଲେ । କାର୍ଯ୍ୟର ସୁପରିଚାଳନା ନିମନ୍ତେ ଏକ ବିଧିବଦ୍ଧ ଯୋଜନା କରିଥିଲେ ହେଁ ପ୍ରଥମ ପର୍ଯ୍ୟାୟ କାର୍ଯ୍ୟକୁ ଭାରତୀୟମାନଙ୍କର ଆକ୍ରମଣ ଅବରୋଧ କଲା । ଫୁଣ୍ଟି ତାଙ୍କର ଅନୁସଂଧାନକାର୍ଯ୍ୟ ବଂଦ ରଖି ନିଜ ସହରକୁ ପ୍ରତ୍ୟାବର୍ତ୍ତନ କଲେ ।

ସମଗ୍ର ବିଶ୍ୱବାସୀଙ୍କ ମନରେ ସୁବର୍ଣ୍ଣ ରାଜ୍ୟ ଏକ ଚାଞ୍ଚଲ୍ୟ ସୃଷ୍ଟିକଲା । ଉନବିଂଶ

ଶତାବ୍ଦୀରେ ଅନୁସଂଧାନକାର୍ଯ୍ୟ ବ୍ୟାପକ ହେଲା । ହମ ବୋଲ ବୈଜ୍ଞାନିକ ଉପାୟରେ ଓ ବୋନପ୍ଲଣ୍ଡ ଭୌଗଳିକ ଉପାୟରେ ଅନୁସଂଧାନ ଆରମ୍ଭ କଲେ । ବହୁ ଅନୁସଂଧାନ ପରେ ସେ ଉଭୟ ମତ ଦେଲେ ଯେ ପରିମା ନାମରେ କୌଣସି ହ୍ରଦ ନାହିଁ, ୧୫୮୦ ମସିହାରେ ଅନୁସଂଧାନ ମୁତାବକ ଗୁଆଟାଲିଟ ହ୍ରଦ ନିକଟରେ ଅନୁସଂଧାନ କରାଗଲା । ୧୯୧୨ ମସିହାରେ 'କଣ୍ଟ୍ରାକ୍ଟସ ଲିମିଟେଡ୍' ନାମକ ଏକ ବ୍ରିଟିଶ୍ କଂପାନୀ ଉକ୍ତ ହ୍ରଦ ନିକଟରେ ପହଞ୍ଚିଲେ । ୧୫୦,୦୦୦ ଡଲାର ମୂଲ୍ୟର ଜଳ ନିଷ୍କାସନ ସରଞ୍ଜାମ ସାହାଯ୍ୟରେ ଜଳ ନିଷ୍କାସନ କାର୍ଯ୍ୟକଲେ । ବହୁଳ ଅର୍ଥ ବ୍ୟୟ ପରେ ଉକ୍ତ ସଂସ୍ଥା ହ୍ରଦଟିର ପଙ୍କ ଭିତରୁ ପାଇଥିବା ସୁନାର ମୂଲ୍ୟ ଯଥେଷ୍ଟ କମ୍ ଥିଲା । ମାତ୍ର ଏକମାତ୍ର ଆତ୍ମ ସନ୍ତୋଷ ଥିଲା ହ୍ରଦ ଭିତରୁ ମିଳିଥିବା ସୁବର୍ଣ୍ଣ ପ୍ରତିମୂର୍ତ୍ତିଟିଏ ।

ଏହି ଅନୁସନ୍ଧାନ ପରଠାରୁ ଆଉ କୌଣସି ଅନୁସଂଧାନ କାର୍ଯ୍ୟ କରାଯାଇଥିବାର ସଂବାଦ ମିଳିନି । ଧନଲିପ୍ସୁ ଅନୁସଂଧାନକାରୀ ନୈରାଶ୍ୟକୁ ଅଟ୍ଟହାସ୍ୟ କରି ଏ ଅବଧି ଦୁଇଟି ସୁବର୍ଣ୍ଣ ମଣିଷଙ୍କର ପ୍ରତିମୂର୍ତ୍ତି ସଂଗ୍ରହାଳୟରେ ସୁରକ୍ଷିତ ଅଛି । ମାତ୍ର ଗଦାଏ ସୁନା, ମୁଣ୍ଡା ମୁଣ୍ଡା ସୁନାର ଗନ୍ତାଘର ପ୍ରକୃତରେ ଅଛି କି ନାହିଁ ଜଣାଯାଇନି ।



# କଲମ୍ବସଙ୍କ ପୂର୍ବର ଆମେରିକା

*କିଏ ପ୍ରଥମେ ଆବିଷ୍କାର କରିଥିଲା ଆମେରିକା ? ସିରିଆନ୍, ଚିନା ନା ପର୍ତ୍ତୁଗୀଜ ?*
*ତେବେ ସେ ଯାହା ହେଉ ଆମେରିକା ଆବିଷ୍କାରରେ ଗୌରବ ମଣ୍ଡିତ କେବଳ କଲମ୍ବସ୍ ।*
*ହେଲେ ଏଇଠି ସରିନି ବିତର୍କର ଝଡ଼ । ଆଧୁନିକ ଜ୍ଞାନ କୌଶଳରେ ଚାଲିଛି ତଥ୍ୟ ଅନ୍ୱେଷଣ ।*

ମଣିଷ ଅନୁସନ୍ଧିତ୍ସୁ ପ୍ରିୟ । ପୃଥିବୀ ପୃଷ୍ଠରୁ ନୂଆ ସ୍ଥାନଟିଏ ଆବିଷ୍କାର କରିବା, କୌଣସି ସଭ୍ୟତା ତଥା ସଂସ୍କୃତିର ମୂଳ ଉଦ୍‌ଘାଟନ କରିବା ଇତ୍ୟାଦି କାର୍ଯ୍ୟରେ କାହିଁ କେତେଶହ ବର୍ଷ ପୂର୍ବରୁ ନିଜକୁ ନିୟୋଜିତ କରିଆସିଛି ।

ଅନେକ ଅନୁସଂଧାନର ବ୍ୟର୍ଥତା ପରେ ୧୪୫୦ ମସିହାରୁ ୧୫୫୦ ମସିହା ମଧ୍ୟରେ ମାନବ ସମାଜ ଅନେକ ସ୍ଥାନ ଆବିଷ୍କାର କରିବା ସଙ୍ଗେ ସଙ୍ଗେ ପୃଥବୀ ମାନଚିତ୍ରରେ ଅନେକ ପରିବର୍ଦ୍ଧିତ ହୋଇଥିଲା । ୧୪୫୦ରୁ ୧୫୫୦ ମସିହାକୁ ଇତିହାସ ''ଆବିଷ୍କାର ଯୁଗ''ର ଆଖ୍ୟା ନେଇଥିଲେ ହେଁ କଲମ୍ବସଙ୍କ ଦ୍ୱାରା ଆମେରିକା ଆବିଷ୍କାରର ଯଥେଷ୍ଟ ପୂର୍ବରୁ ଆମେରିକା ଆବିଷ୍କୃତ ହୋଇଥିଲା । ୧୪୫୦ ମସିହା ପୂର୍ବରୁ ଆବିଷ୍କାର ଜନିତ ପ୍ରଚେଷ୍ଟା ଅବଲୁପ୍ତ ରହିଥିଲା । ମାତ୍ର ଆମେ ଯଦି ମାନିନେବା ଯେ ୪୦,୦୦୦ ବର୍ଷ ପୂର୍ବେ ଆମେରିକାର ଭାରତୀୟମାନେ ଏସିଆ ମହାଦେଶରୁ ଏକ ସେତୁବନ୍ଧ ଯୋଗେ ଆମେରିକାକୁ ଯାଇଥିଲେ ତାହାଲେ ସ୍ୱତଃ ପ୍ରଶ୍ନଟିଏ ମନକୁ ଆସିବ ଯେ ପ୍ରବାସୀ ଭାରତୀୟମାନେ ନିଜ ଦେଶକୁ ପ୍ରତ୍ୟାବର୍ତ୍ତନ ନକରି କାହିଁକି ସେଠାରେ ବସବାସ କଲେ ଓ ଜନଶ୍ରୁତି ଅନୁଯାୟୀ ନିର୍ମିତ ସେତୁବଂଧଟି କୁଆଡ଼େ ଗଲା ?

ଶିରୀଆ ଅଧବାସୀମାନେ ଦାବି କରନ୍ତି ଯେ କଳମ୍ବସଙ୍କ ଜଳଯାତ୍ରାର ଯଥେଷ୍ଟ ପୂର୍ବରୁ ସେମାନେ ଜଳପଥରେ ନୂତନ ସ୍ଥଳପଥ ଅନ୍ୱେଷଣରେ ବାହାରିଥିଲେ । ଶିରୀଆ ଅଧିବାସୀଙ୍କର ଏହି ଦାବି ସଂପର୍କରେ କୌଣସି ଐତିହାସିକ ତଥ୍ୟ ନଥିଲେ ହେଁ ଶିରୀଆ ଅଧିବାସୀମାନେ ପ୍ରାଚୀନ ଯୁଗର ଶ୍ରେଷ୍ଠ ନାବିକ ହୋଇଥିବାର ପ୍ରମାଣ ମିଳେ । ଲୋହିତ ସାଗର ବକ୍ଷରେ ନୌକା ବାହି ତିନିବର୍ଷ ପରେ ଫେରିଥିବା ଶିରୀଆ ନାବିକମାନଙ୍କର ଗୌରବ ଏ ଅବଧି ଆଉ କେହି ଅର୍ଜନ କରିନାହାନ୍ତି । ଇଜିପ୍ଟର ଫାରୋ ନିକୋ ସମୁଦ୍ର ବକ୍ଷରେ ଆଫ୍ରିକାର ଚର୍ତୁପାର୍ଶ୍ୱ ପରିଭ୍ରମଣ କରି ଦାବି କଲେ ଯେ ସେ ତାଙ୍କ ଡାହାଣ

ପାଖରେ ସୂର୍ଯ୍ୟ ଦେଖୁଛନ୍ତି । ଫାରୋଙ୍କର ଏହି ଉକ୍ତିରେ ହିରୋଡ଼ଟ୍ ହସିଲେ ଓ ମତ ଦେଲେ ଯେ ''ଫାରୋଙ୍କର ତଥ୍ୟକୁ ଅନ୍ୟ କେହି ବିଶ୍ୱାସ କରୁଥିଲେ ବି ସେ ତିଳେମାତ୍ର ବିଶ୍ୱାସ କରନ୍ତି ନାହିଁ ।''

ଜଳଯାତ୍ରା ସଂପର୍କେ ଉପରୋକ୍ତ ତଥ୍ୟମାନ ବିଶ୍ୱାସ ନହେଉଥିଲେ ହେଁ ଶିରୀଆ ଅଧିବାସୀମାନେ ଜଳଯାତ୍ରାରେ ଥିବା ସମୟରେ, ପୂର୍ବକୁ ମୁହଁ କରି ବିଷୁବକ୍ରାନ୍ତି ଅତିକ୍ରମ କରୁଥିବାରୁ ଉତ୍ତର ଦିଗକୁ ଆସୁଥିବା ସୂର୍ଯ୍ୟ ଜାହାଜର ଡାହାଣ ପଟରେ ଦୃଶ୍ୟମାନ ହେଉଥିବାର ଭୌଗଳିକ ତଥ୍ୟକୁ କେହି ଅବିଶ୍ୱାସ କରିପାରିଲେନି ବା ଏହାକୁ ଖଣ୍ଡନ କରିବାର କୌଣସି ଯୁକ୍ତି ଏ ଅବଧି କେହିବି ଉପସ୍ଥାପନା କରିପାରିନଥିବାରୁ ଫାରୋଙ୍କର ନୌଯାତ୍ରା ପାଇଁ ଆଉ କୌଣସି ସଂଦେହ ରହିଲାନି ।

୧୮ଶ ଶତାବ୍ଦୀରେ ଶିରୀଆ ଅଧିବାସୀ ଆଟଲାଣ୍ଟିକ୍ ମହାସାଗରରେ ଭ୍ରମଣ କରି ଆଢୋରାଠାରୁ ଅନେକ କାରଥାନିଆନ ମୁଦ୍ରା ଆବିଷ୍କାର କରିଥିଲେ । ୧୮୭୨ ମସିହାରେ ବ୍ରାଜିଲର ଏକ ବୃକ୍ଷ କାଟିବାରୁ ଏକ ଅଜଣା ଖୋଦିତ ଲିପିର ପ୍ରସ୍ତର ମିଳିଲା । ଜାତୀୟ ସଂଗ୍ରହାଳୟର ନିର୍ଦ୍ଦେଶକ ଏହାକୁ 'ରିଓ ଡି ଜାଇଁରେ', 'ଲାଡ଼ିସ୍ଲୁ ନିଟ' ବୋଲି ଅନୁବାଦ କଲେ । ଏହି ଅନୁଧାନରୁ ଅନୁମେୟ ହେଲା ଯେ ଜଳଯାତ୍ରୀମାନେ ସମୁଦ୍ର ବକ୍ଷରେ ଘୁରିବୁଲି ସେମାନଙ୍କର ଆରାଧ ଦେବାଦେବୀଙ୍କୁ ସନ୍ତୁଷ୍ଟ କରୁଥିଲେ । ଆବିଷ୍କୃତ ମୁଦ୍ରାକୁ ଅଧ୍ୟୟନ କରିବାରୁ ଜଣାଗଲା ଯେ ''ସମୁଦ୍ର ବକ୍ଷରେ ଦଶୋଟି ଜାହାଜ ସହ ଆମେ ଦୁଇବର୍ଷ ଏକତ୍ର ଥିଲୁ । ଆଫ୍ରିକା ମହାଦେଶ ଅନ୍ତର୍ଗତ ଜଳବକ୍ଷରେ ଜଳଯାତ୍ରାର ଦ୍ୱିତୀୟ ବର୍ଷ ପୂର୍ତ୍ତି ପାଳନ ସମୟରେ ସାମୁଦ୍ରିକ ଝଡ଼ ଆମମାନଙ୍କୁ ପରସ୍ପରଠାରୁ ପୃଥକ କଲା ଓ କକ୍ଷଚ୍ୟୁତ ଗ୍ରହପରି ୧୨ଜଣ ପୁରୁଷ ଓ ୩ଜଣ ମହିଳା ଏକ ନୂତନ ଉପକୂଳରେ ପହଁଞ୍ଚି ଦେବା ଦେବୀଙ୍କୁ ପ୍ରାର୍ଥନା କଲୁକି ଆମ ଜଳଯାତ୍ରାରେ ଯଥାଶୀଘ୍ର ସହାୟ ହୁଅନ୍ତୁ । ପ୍ରାପ୍ତ ମୁଦ୍ରା ଉପରେ ଲିଖିତ ତଥ୍ୟରୁ ଜଣାଯାଏ ଯେ ''ନୂଆ କୂଳ''— ''ଲୌହ ଦ୍ୱୀପ'' ନାମରେ ପରିଚିତ । କାରଣ ମୁଦ୍ରାର ପ୍ରାପ୍ତିସ୍ଥାନ ଲୌହପଥରର ଏକ ଗନ୍ତାଘର ଥିଲା ।

ଆମେରିକା ଆବିଷ୍କାର ପୁସ୍ତକର ରଚୟିତା ସାମୁଏଲ ଇଲିଅଟ ମାରସନ ଉପରୋକ୍ତ ତଥ୍ୟ ସଂପର୍କେ ମତବ୍ୟକ୍ତ କଲେ ଯେ ମୂଳ ଖୋଦେଇ ପଥରଟି ମିଳୁନଥିବାରୁ କୌଣସି ଏକ ଧାତୁ ଉପରେ ଉପରୋକ୍ତ ଉକ୍ତିକୁ ଉଲ୍ଲେଖ କରି କିଛିଦିନ ପାଇଁ ମାଟିତଳେ ଲୁଚାଇ ରଖାଗଲା । ପୂର୍ବ ପରିକଳ୍ପନା ଅନୁଯାୟୀ ଏହାକୁ ପଦାକୁ ବାହାର କରାଯାଇ ନିଜକୁ ଗୌରବମଣ୍ଡିତ କରିବାର ଚେଷ୍ଟା କରାଗଲା । ସାମୁଏଲ ମଧ୍ୟ ଉଲ୍ଲେଖ କଲେ ଯେ ଜଳଯାତ୍ରାର ଦୁଇବର୍ଷ ଅନୁଭୂତି ମୁଦ୍ରାରେ ଲିପିବଦ୍ଧ କରାନଯାଇଥିବା ମଧ୍ୟ ପରିକଳ୍ପିତା ଯୋଜନାର ପ୍ରମାଣ । ହାର୍ଭାଡ଼ର ଫ୍ରାଙ୍କ ଏମ୍ କ୍ରସ ଉପରୋକ୍ତ ମତବାଦକୁ ମଧ୍ୟ ଗ୍ରହଣ ନକରି ସାମୁଏଲଙ୍କ ସହ ଏକ ମତ ହେଲେ ।

୧୬୫୮ ମସିହାରେ ଅନ୍ତରୀକ୍ଷ ଅନ୍ତର୍ଗତ ବାଉରନିଅରୁ ମିଳିଥିବା ସ୍କୃତି ନିଦର୍ଶନରୁ ଜଣାଯାଏ ସମୁଦ୍ରକୂଳରୁ ଆମେରିକା ପର୍ଯ୍ୟନ୍ତ ରାସ୍ତାଟିଏ ଅଛି, ମାତ୍ର ଐତିହାସିକ ରୋବର୍ଟ ଲୋପେଜ ଏହାକୁ ଅସ୍ୱୀକାର କରିବା ସଙ୍ଗେ ସଙ୍ଗେ ଏହାକୁ ପରିହାସାର୍ଥ କୃତକର୍ମର ଆଖ୍ୟା ଦେଲେ ।

କଲମ୍ବସଙ୍କ ପୂର୍ବରୁ ଆମେରିକା ଆବିଷ୍କୃତ ହେବା ସଂପର୍କେ ଅନେକ ତଥ୍ୟ ମିଳିବା ସଙ୍ଗେ ସଙ୍ଗେ ପ୍ରାମାଣିକ ତଥ୍ୟ ଉପସ୍ଥାପିତ କରି ଶିରୀଆ ଅଧିବାସୀମାନେ ପୃଥିବୀ ମାନଚିତ୍ରର ରେଖା ପରିବର୍ତ୍ତିତ କରିଥିବାର ଗୌରବ ଦାବି କରନ୍ତି । ଶିରୀଆ ଅଧିବାସୀଙ୍କର ଏହି ତଥ୍ୟକୁ ତୁର୍କୀ ନୌବାହିନୀର ମୁଖ୍ୟ କର୍ଣ୍ଣଧାର ପିରି ରଷିଙ୍କ ଦ୍ୱାରା ପ୍ରସ୍ତୁତ ନକ୍ସା ମଜଭୂତ କରେ । କାରଣ ଖ୍ରୀ.ପୂ. ୪୭ରେ ଆଲେକ୍‌ଜାଣ୍ଡାରଙ୍କ ଦ୍ୱାରା ପ୍ରସ୍ତୁତ ନକ୍ସାସହ ରଷିଙ୍କ ଦ୍ୱାରା ପ୍ରସ୍ତୁତ ନକ୍ସାରେ ଅନେକ ସାମଞ୍ଜସ୍ୟ ଥିଲା । ଗ୍ରୀକ୍ ଦାର୍ଶନିକ ଡାଓ ଡୋରସ ସୁକୁଲସ ପ୍ରଥମ ଶତାବ୍ଦୀରେ ଲେଖିଥିବା ତାଙ୍କର ପୁସ୍ତକରେ ଉଲ୍ଲେଖ କରିଥିଲେ ଯେ ଶିରୀଆ ଅଧିବାସୀମାନେ ଆମେରିକାର ପ୍ରଥମ ଆବିଷ୍କାରକ ଥିଲେ ।

ଶିରୀଆ ଅଧିବାସୀମାନଙ୍କ ବ୍ୟତୀତ ଚିନ୍ ଅଧିବାସୀମାନେ ମଧ୍ୟ ଆମେରିକା ଆବିଷ୍କାର କରିଥିବାର ଦାବି କରନ୍ତି । ଚିନ୍ ପରିବ୍ରାଜକ ହୁଇ ସେନ ଓ ଅନ୍ୟ ଚାରିଜଣ ବୌଦ୍ଧ ସନ୍ୟାସୀ ୪୫୯ ଖ୍ରୀ.ଅ.ରେ ଜଳଯାତ୍ରା ଆରମ୍ଭ କରିଥିଲେ । ପ୍ରଶାନ୍ତ ମହାସାଗରର ଦକ୍ଷିଣ ଉପକୂଳରୁ ଯାତ୍ରା ଆରମ୍ଭ କରି ଦକ୍ଷିଣ ଆମେରିକାରେ ପହଞ୍ଚିଥିଲେ । ଚିନ ପରିବ୍ରାଜକମାନେ ଫୁ ସ୍ୟାଙ୍ଗ୍ ବୃକ୍ଷ ଆବିଷ୍କାର କରି ନିଜ ଭ୍ରମଣ କାହାଣୀରେ ବୃକ୍ଷର ଉପକାରିତା ସଂପର୍କେ ବିଶେଷ ତଥ୍ୟ ଉପସ୍ଥାପିତ କରି ଉଲ୍ଲେଖ କରିଥିଲେ ଯେ ଆମେରିକାରେ ଥିବା ବୃକ୍ଷଟିର ଗଜାକୁ ମଣିଷ ଖାଦ୍ୟ ନିମନ୍ତେ ଓ ଶାଖା ପ୍ରଶାଖାକୁ ଗୃହନିର୍ମାଣ ନିମନ୍ତେ ବ୍ୟବହାର କରୁଥିଲେ । ଆମେରିକାରେ ବସବାସ କରୁଥିବା ତତ୍‌କାଳୀନ ସଭ୍ୟତା ସଂପର୍କେ ହୁଇସେନ ଉଲ୍ଲେଖ କରିଥିଲେ ଯେ ସେ ସମୟରେ ଚକା ସଂଲଗ୍ନ ଗାଡ଼ି ସାହାଯ୍ୟରେ ମାଲପତ୍ର ନେବା ଆଣିବା କରୁଥିଲେ । ଏହି ଗାଡ଼ିକୁ ଟାଣିବା ପାଇଁ ହରିଣ, ବଳଦ ଓ ଘୋଡ଼ା ଆଦି ଗୃହପାଳିତ ପଶୁଙ୍କୁ ବ୍ୟବହାର କରୁଥିଲେ । ମାତ୍ର ଇତିହାସରୁ ଜଣାଯାଏ ଆମେରିକା ଅଧିବାସୀମାନେ ସ୍ପେନ ଆକ୍ରମଣ ପୂର୍ବରୁ ଚକାଥିବା ଗାଡ଼ିର ବ୍ୟବହାର ଜାଣି ନଥିଲେ । ତେଣୁ ହୁ ସେନ୍‌ଙ୍କ ଉକ୍ତିକୁ ସହଜରେ ଗ୍ରହଣ କରାଯାଇ ପାରିଲାନି ।

ଭୌଗଳିକ ଗବେଷଣାରୁ ଜଣାଯାଏ ଯେ ଏସିଆ ଓ ଆମେରିକା ମଧ୍ୟରେ ଏକ ରାସ୍ତା ଥିଲା । କଲମ୍ବସଙ୍କ ପୂର୍ବରୁ ମେକ୍ସିକୋରେ ଚିନ୍, ଶିରୀଆ ତଥା ନିଗ୍ରୋମାନେ ପହଞ୍ଚି ସାରିଥିଲେ । ଆମରିକାରୁ ଭଗ୍ନ ଅବସ୍ଥାରେ ମିଳିଥିବା ହାତୀ ମୁଣ୍ଡ ଓ ମାହୁନ୍ତ

ମୂର୍ତ୍ତିରୁ ନୃତତ୍ତ୍ୱବିତ୍ ପ୍ରମାଣ କଲେ ଯେ ଏସିଆ ଅଧିବାସୀଙ୍କ ପ୍ରଭାବରୁ ପୁରାତନ ଆମେରିକାର ଶିକ୍ଷା ଓ ସଂସ୍କୃତିରେ ଏତାଦୃଶ ପରିବର୍ତ୍ତନ ଘଟିଛି ।

କଲମ୍ବସଙ୍କ ପୂର୍ବରୁ ଆମେରିକା ଆବିଷ୍କାର ସଂପର୍କେ ଜ୍ୟାକୁସ ଡି ମ୍ୟାଛ୍ୟୁଙ୍କ ନିବନ୍ଧ ଅନୁଯାୟୀ ୯୬୭ ଖ୍ରୀ.ଅ.ରେ ଭିକିଙ୍ଗ୍ ଜାହାଜ ଆମେରିକା ଅଭିମୁଖେ ବାହାରି ଭିନ୍‌ଲ୍ୟାଣ୍ଡଠାରେ ପହଁଞ୍ଚିଥିଲା । ଫ୍ରେଞ୍ଚ ନାବିକ ଉଲ୍‌ମାନଙ୍କ ଜାହାଜର ନାମ ଅନୁଯାୟୀ ସେ ଏହାକୁ ଭିନ୍‌ଲ୍ୟାଣ୍ଡ ନାମ ଦେଇଥିଲେ । ଉଲମାନ ଓ ତାଙ୍କର ସହକର୍ମୀମାନେ ୩୦୦ବର୍ଷ ଧରି ମେକ୍ସିକୋରେ ବସବାସ କଲେ । ୧୦୦୪ ଖ୍ରୀ.ଅ.ରେ ସେମାନେ କେପ୍‌କ୍ଲିନେସ ଆବିଷ୍କାର କଲେ । କେପକ୍ଲିନେସ ଆବିଷ୍କାର ସଂପର୍କେ କୌଣସି ପ୍ରାମାଣିକ ତଥ୍ୟ ନଥିଲେ ବି ଏହାକୁ ଅବିଶ୍ୱାସ କରିହେଉନି, ମାତ୍ର ବର୍ତ୍ତମାନର ନିଉଫାଉଣ୍ଡଲ୍ୟାଣ୍ଡ ଏବଂ ଅତୀତର ହୋଲୁଲ୍ୟାଣ୍ଡ ବର୍ତ୍ତମାନର ବ୍ୟାଫିନ ଦ୍ୱୀପ ।

ଉପରୋକ୍ତ ବିତର୍କିତ ତଥ୍ୟ ବ୍ୟତୀତ ଆହୁରି ଅନେକ ତଥ୍ୟ ଥିବାର ଚିନ୍, ଶିରୀଆ ଓ ପର୍ତ୍ତୁଗୀଜ ଆମେରିକା ଆବିଷ୍କାର କରିଥିବାର ଗୌରବ ଦାବି କରନ୍ତି । ପର୍ତ୍ତୁଗୀଜ ଐତିହାସିକ ଡଃ ଆନ୍ତୋନିଓ ଯୁକ୍ତି କରନ୍ତି ଯେ ଆଜରା ଦ୍ୱୀପ ବ୍ୟତୀତ ଆମେରିକାର ଅନ୍ୟାନ୍ୟ ସମ୍ପର୍କରେ ସେମାନେ ଜାଣିଥିଲେ । କଲମ୍ବସ ଆମେରିକା ସଂପର୍କେ ପର୍ତ୍ତୁଗୀଜମାନଙ୍କଠାରୁ ଜାଣିବା ପରେ ନିଜ ଜଳଯାତ୍ରା ଆରମ୍ଭ କରିଥିଲେ ।

ଫ୍ଲୋରୋନାଇଟି ଆମେରିଗୋ ଭେସପୁକ ଆମେରିକା ଆବିଷ୍କାର ସଂପର୍କେ କୌଣସି କାର୍ଯ୍ୟ କରିନଥିଲେ ହେଁ ନିଜକୁ ଆମେରିକାର ପ୍ରତିଷ୍ଠାତା ଭାବେ ଦାବି କରିଥିଲେ ଓ ତାଙ୍କ ନାମ ଅନୁଯାୟୀ ଜର୍ମାନ ନକ୍ସା ପ୍ରସ୍ତୁତକାରୀ ମାର୍ଟିନ ଓ ୱାଲସିମୁଲାର ୧୫୦୭ ମସିହାରେ ସଂପୃକ୍ତ ଭୂଖଣ୍ଡକୁ ଆମେରିକା ନାମରେ ନାମିତ କରି ପୃଥିବୀ ମାନଚିତ୍ର ସହ ସଂଯୋଗ କରିଥିଲେ ।

କଲମ୍ବସଙ୍କ ପୂର୍ବରୁ ଆମେରିକା ଆବିଷ୍କାର ସଂପର୍କେ ଅନେକ ତଥ୍ୟ ମିଳିଥିଲେ ହେଁ ଆମେରିକା ଆବିଷ୍କାରର ଗୌରବ କଲମ୍ବସଙ୍କ ବ୍ୟତୀତ ଅନ୍ୟ କାହାରିକୁ ଦିଆଯାଇ ପାରୁନି । ବିତର୍କିତ ତଥ୍ୟର ସତ୍ୟତା ଅନ୍ୱେଷଣରେ ଏ ଅବଧି ଅନେକ ଜ୍ଞାନକୌଶଳ ନିୟୋଜିତ ହୋଇଛି । ଆମେରିକାର ଭୌଗଳିକ ଅବସ୍ଥିତି ଆମେରିକାର ଶିକ୍ଷା ସଂସ୍କୃତିର ସବିଶେଷ ତର୍ଜମାରୁ ହୁଏତ ପ୍ରମାଣ ହେବ ଶିରୀଆ, ଚିନ ପର୍ତ୍ତୁଗୀଜ କିମ୍ବା କଲମ୍ବସ ପ୍ରଥମେ ଆମେରିକା ଆବିଷ୍କାର କରିଥିଲେ ।



# ସ୍ପର୍ଶରେ ସ୍ପର୍ଶରେ ବ୍ୟାଧି ଉପଶମ

*ସତରେ.... ସତରେ କ'ଣ ଚିକିଏ କାଉଁରୀ ସ୍ପର୍ଶରେ ଅନ୍ଧ ଫେରିପାଏ ତା'ର ନେତ୍ରଯୁଗଳ ? ପଙ୍ଗୁ ଲଂଘିଯାଏ ସାତ ସାଗର ?*

*କୁଷ୍ଠ, କ୍ୟାନ୍‌ସର ଓ ଆଉ ଆଉ ବ୍ୟାଧି କ'ଣ ଦୂରେଇଯାଏ ଅଚାନକ୍ ?*

*ଯଦି ଏସବୁ ଅସମ୍ଭବ, ମାତ୍ର ଗୋଟିଏ ମୁହୂର୍ତ୍ତରେ ହୁଏ ସମ୍ଭବ; ତେବେ ସେଇ କାଉଁରୀ ଛୁଆଁର ରହସ୍ୟ କ'ଣ....... ଆଉ ସେଇ ରହସ୍ୟ ଘେରରେ ଛପି ରହିଚି କୋଉ ଅଲୌକିକ ଶକ୍ତିର ଖିଅ.....*

ବିଜ୍ଞାନର ଅଗ୍ରଗତି ଘଟିବା ସଙ୍ଗେ ସଙ୍ଗେ ଡାକ୍ତରୀ ବିଜ୍ଞାନରେ ଯଥେଷ୍ଟ ଉନ୍ନତି ସାଧିତ ହୋଇଛି । ମଣିଷକୁ ଅମର କରିପାରି ନଥିଲେ ବି ଔଷଧୀୟ ଶକ୍ତିବଳରେ ଅନେକ ରୋଗରୁ ଆରୋଗ୍ୟ କରିପାରୁଛି । ପ୍ରତିଷେଧକ ବଳରେ ଅନେକ ରୋଗକୁ ଦୂରେଇ ଦେଇଛି । କିନ୍ତୁ ବିନା ଔଷଧରେ ରୋଗୀକୁ ଆରୋଗ୍ୟ କରିପାରିବା ଆଶ୍ଚର୍ଯ୍ୟ ବୋଧ ହେଉଥିଲେ ବି ବିଂଶ ଶତାବ୍ଦୀର ଶେଷ ଭାଗରେ ବି ମଣିଷ ବିନା ଔଷଧରେ ଆରୋଗ୍ୟତା ଲାଭ କରୁଛନ୍ତି ।

ଜୀବନ ପ୍ରଣାଳୀରେ ଏ ଅବଧି ପ୍ରଚଳିତ, ଛୁଇଁବା ଶକ୍ତି ବଳରେ ଆରୋଗ୍ୟ ଲାଭ କରିବାର ରହସ୍ୟ, ଉଦ୍‌ଘୋଷିତ କରିବା ପାଇଁ ଜ୍ଞାନଲିପ୍ସୁଙ୍କ ମନରେ ଆଜି ଅନେକ ପ୍ରଶ୍ନ । ସେମାନଙ୍କ ପ୍ରଚେଷ୍ଟାରେ ଅନେକ ଉତ୍ତର ମିଳିଥିଲେ ବି ସମସ୍ତ ପ୍ରଶ୍ନର ଉତ୍ତର ଏଯାଏଁ ମିଳିନି ।

Dr. O. Corl Simontonଙ୍କ ପରୀକ୍ଷାମୂଳକ ମାନସିକ କସରତ ଦ୍ୱାରା ଏକଷଠୀ ବର୍ଷୀୟା ବୃଦ୍ଧଙ୍କର କର୍କଟରୋଗ ସଂପୂର୍ଣ୍ଣ ଉପଶମ ହେବା ସମ୍ବାଦ ପ୍ରକାଶ ପାଇବା ପରେ ବୈଜ୍ଞାନିକମାନେ ନିଜର ଗବେଷଣା ଆରମ୍ଭ କଲେ । କର୍କଟ ପରି ଏକ ମାରାତ୍ମକ ରୋଗର ଆରୋଗ୍ୟତା ପାଇଁ Dr. O. Corlଙ୍କ ଚିକିତ୍ସା ପ୍ରଣାଳୀକୁ ଅନୁଧ୍ୟାନ କଲେ । Dr. O. Corl ବୃଦ୍ଧଙ୍କୁ ତିନୋଟି ବାଟ ବତାଇ ଦେଇଥିଲେ । ନିଜ ମାନସିକ କସରତ ପାଇଁ ପ୍ରଥମ ଅଢ଼େଇ ମିନିଟ୍ ରୋଗୀ ସ୍ଥିର ନିଶ୍ଚଳ ମନରେ ବସି 'ରିଲାକ୍ସ'-

'ରିଲାକ୍ସ' ଶବ୍ଦ ଉଚ୍ଚାରଣ କରିବ । ରୋଗୀର ନିଃଶ୍ୱାସ ସହ ତାଳଦେଇ ରିଲାକ୍ସ ଶବ୍ଦ ଉଚ୍ଚାରିତ ହେବ । ଠିକ୍ ଅଢ଼େଇ ମିନିଟ୍ ପରେ ରୋଗୀ ନିଜର ମାଢ଼ି ଓ ଗଳାର ତନ୍ତୁଗୁଡ଼ିକୁ ନୀରବ ରଖି ଦ୍ୱିତୀୟ ପର୍ଯ୍ୟାୟ କସରତ ଆରମ୍ଭ କରିବ । ଦ୍ୱିତୀୟ ପର୍ଯ୍ୟାୟର କସରତ ସମୟରେ ସେ ପ୍ରଥମେ ସ୍ଥିରମନରେ ବସି ନିଜ ଜୀବନ ମଧ୍ୟରେ ଦେଖିଥିବା ସମସ୍ତ ସୁଖବୋଧ୍ୟ, ସୁନ୍ଦର ସ୍ଥାନ ଗୁଡ଼ିକର ରୂପକଳ୍ପକୁ ମନେ ପକାଇବ । ପରବର୍ତ୍ତୀ ତଥା ଶେଷ ପର୍ଯ୍ୟାୟରେ ରୋଗୀ ଭାବିନେବ ଯେ ତା ପାଟିରେ ଥିବା ଫୋଟକାଟି ଫାଟିଯାଇ ସେଥିରେ ଥିବା ସମସ୍ତ ଆବର୍ଜନୀୟ ନାଳ, ପୂଜ ଓ ରକ୍ତ ଇତ୍ୟାଦି ବାହାରିଯାଇ ପାଟିଟି ପରିଷ୍କାର ହୋଇଯାଇଛି କିମ୍ବା କ୍ଷତସ୍ଥାନଟି ପୂରା ସୁସ୍ଥ ହୋଇଯାଇଛି ।

ସାତ ସପ୍ତାହ ପର୍ଯ୍ୟନ୍ତ ରୋଗୀ ଉପରୋକ୍ତ ପଦ୍ଧତି ଅବଲମ୍ବନ କଲାପରେ କ୍ରମଶଃ ସୁସ୍ଥତା ଅନୁଭବ କଲା ଓ Dr. O. Corl ତାଙ୍କୁ ଡାକ୍ତରଖାନାରୁ ଘରକୁ ପଠାଇଦେଲେ ।

ଯାଦୁ ଖେଳ ପରି କର୍କଟ ରୋଗରେ ଆକ୍ରାନ୍ତ ରୋଗୀଟି Dr. O. Corl ଙ୍କ ଦ୍ୱାରା ବିନା ଔଷଧରେ ସୁସ୍ଥ ହେବା ପରି, ଅନ୍ୟର ହସ୍ତ ସ୍ପର୍ଶରେ ଶହ ଶହ ରୋଗୀ ଆରୋଗ୍ୟତା ଲାଭ କରୁଥିବା ଦୃଷ୍ଟାନ୍ତ ଅନେକ ବର୍ଷ ଧରି ଚଳି ଆସୁଛି ।

ମାନସିକ କସରତ ବା ନିଜର ମାନସିକ ବିଶ୍ଳେଷଣ ଜରିଆରେ ଆରୋଗ୍ୟ ଲାଭ କରିବା କିମ୍ବା କୌଣସି ବ୍ୟକ୍ତିର ହାତ ସ୍ପର୍ଶରେ ସୁସ୍ଥ ହେବା ଡାକ୍ତରୀ ବିଜ୍ଞାନ ସମ୍ମତ ନୁହେଁ । ତେଣୁ ଏଯାବତ୍ ଡାକ୍ତରୀ ବିଜ୍ଞାନ ଏହି ସେବା କୌଶଳ ନିମନ୍ତେ କୌଣସି ନିର୍ଦ୍ଦିଷ୍ଟ ନୀତି ନିଷ୍ପତ୍ତି କରିନାହିଁ । କିମ୍ବା ଏହି ସେବା ପ୍ରଣାଳୀରେ କୌଣସି ନାମକରଣ କରିନାହାଁନ୍ତି । ବହୁ ପ୍ରାଚୀନ ଯୁଗରୁ ଚଳି ଆସୁଥିବା 'ଆକ୍ୟୁପଙ୍କଚର୍' ପଦ୍ଧତି ଓ ଡାକ୍ତରୀସେବା ପଦ୍ଧତି ସହ ଆଦୌ ସଂପର୍କ ନଥିବା ଆରୋଗ୍ୟ ଲାଭ କରିବାର ଯାଦୁ ଶକ୍ତିକୁ ନେଇ ଅନେକ ଅନୁସନ୍ଧିତ୍ସୁ ତଥା ଜ୍ଞାନଲିପ୍ସୁ ବିଶାରଦମାନେ ନିଜ ନିଜର ଗବେଷଣା ଚଳାଇ ଆସୁଛନ୍ତି ।

୧୯୭୧ ମସିହାରେ ନିଉୟର୍କ ବିଶ୍ୱ ବିଦ୍ୟାଳୟର ଡା. ଡୋଲର୍ସ କ୍ରିଂଗର ନିଜର ବିଶ୍ଳେଷଣ ଅନୁଯାୟୀ ମତ ଦେଲେ ଯେ ମଣିଷକୁ ଶକ୍ତି ଯୋଗାଉଥିବା ବିଶୁଦ୍ଧ ରକ୍ତ କଣିକାକୁ ନେଇ ହିନ୍ଦୁମାନେ କହୁଥିବା ''ପ୍ରାଣ'' ସହ ଏହି ସେବା ପ୍ରକ୍ରିୟାର ସଂପର୍କ ରହିଛି । ମଣିଷକୁ ଶକ୍ତିଯୋଗାଇ ଚାଲିଥିବା ରକ୍ତ କଣିକା ମଣିଷର ଇଚ୍ଛା ଶକ୍ତି ବଳରେ ସତେଜ ହୋଇଉଠେ ଓ ରୋଗୀର ଅସୁସ୍ଥତାକୁ ଦୂର କରେ । ମାନସିକ ସ୍ତରରେ ଆରୋଗ୍ୟ ନିମିତ୍ତ ପ୍ରବଳ ଆକାଂକ୍ଷା ମଣିଷର ସ୍ଥୂଳ ଶରୀର ତଥା ଅନ୍ତର୍ନିହିତ ସେଲଗୁଡ଼ିକ ଉପରେ ଯେଉଁ ପ୍ରକ୍ରିୟା ସୃଷ୍ଟି କରିଥାଏ ତାହା ରୋଗୀକୁ ଆରୋଗ୍ୟ କରେ ।

କ୍ରିଜର, ଓୟାର ଏଷ୍ଟିବାନିଙ୍କ ସାହାଯ୍ୟ ନେଲେ । ମାସାଚୁଷ୍ଟିର ଫାର୍ମ ହାଉସ୍‌କୁ ୧୯ଜଣ ରୋଗୀ ଓ ୯ଜଣ ସୁସ୍ଥ ଲୋକଙ୍କୁ ନେଇ ନିଜର ସେବା ପ୍ରକ୍ରିୟା ଆରମ୍ଭ କଲେ । ଏଷ୍ଟିବାନି ୬ଦିନ ପର୍ଯ୍ୟନ୍ତ ନିଜର ସେବା ପ୍ରକ୍ରିୟା ଚାଲୁ ରଖିଲେ । ସମସ୍ତଙ୍କୁ ଏକ ପ୍ରକାର ଉପାୟ ବତାଇ ଦିଆଯିବା ସଂଗେ ସଂଗେ ଏକପ୍ରକାର କୌଶଳ ବତାଇ ଦିଆଗଲା । କିନ୍ତୁ ଦେଖାଗଲା ଯେ ସମସ୍ତଙ୍କ ରକ୍ତ ସଂଚାଳନ ଓ ରକ୍ତ କଣିକାରେ ଅଦ୍ଭୁତ ପରିବର୍ତ୍ତନ ଘଟିଛି । ସମେସ୍ତ ଆରୋଗ୍ୟ ଲାଭ କରିଛନ୍ତି ।

କ୍ରିଜର ତାଙ୍କ ସେବା ଉପକ୍ରମର ବିବରଣୀରେ ଉଲ୍ଲେଖ କରିଛନ୍ତି ଯେ ମୋ ଚେଷ୍ଟାରେ ରୋଗୀମାନଙ୍କର ଆଶ୍ଚର୍ଯ୍ୟ ଉପଶମ ଘଟିଛି ଯାହା କୌଣସି ଡାକ୍ତରୀ ଚିକିତ୍ସାରେ ସମ୍ଭବ ନୁହେଁ । କିନ୍ତୁ ଏହି ସେବା ପଦ୍ଧତିରେ ଅଧିକ ଗବେଷଣା ଆବଶ୍ୟକ ।

ଅନ୍ୟାନ୍ୟ ପରୀକ୍ଷାରୁ ମଧ ଅନୁରୂପ ଫଳ ମିଳିଲା । ମାତ୍ର ଏହି ପରୀକ୍ଷା ପାଇଁ ରୋଗୀର ମାନସିକ ସ୍ତରରେ ଏକ ସୁଶ୍ରୁଷାର ପ୍ରଲେପ ଦିଆଯାଇଥିଲା । ଏହି ସୁଶ୍ରୁଷା ପାଇଁ ବୈଜ୍ଞାନିକମାନେ ମତ ଦେଲେ ଯେ "ଆଉ ଯାହା ହେଉନା କାହିଁକି ଅସୁସ୍ଥ ମଣିଷଟିଏ ଥରେ ମାନସିକ ସ୍ତରରେ ସୁସ୍ଥ ହେବାପାଇଁ ପ୍ରସ୍ତୁତ ହୋଇପାରିଲେ ତା ଶରୀର ସୁସ୍ଥତା ପାଇଁ ଆପେ ପ୍ରସ୍ତୁତ ହୋଇଯାଏ । ଏହା କେବଳ ଶରୀରର ସ୍ୱତଃ ପ୍ରତିକ୍ରିୟା । କିନ୍ତୁ ବିନା ଔଷଧରେ କେବଳ ଶାରୀରିକ ବ୍ୟାୟାମ ହିଁ ସୁସ୍ଥ କରିବାରେ ସାହାଯ୍ୟ କରୁଥିବା ସତ୍ୟ ପାଇଁ ବିଜ୍ଞାନ ଏକମତ ନୁହେଁ ।

ବୈଜ୍ଞାନିକମାନଙ୍କର ଉପରୋକ୍ତ ଯୁକ୍ତି ସମସ୍ତଙ୍କୁ ସଂଦେହ ଭିତରକୁ ଟାଣିନେଲା । ଡାଃ. କ୍ରିଜରଙ୍କ ଦ୍ୱାରା ଲିଖିତ ଓ ଆମେରିକାନ୍ ଜର୍ଣ୍ଣାଲ ଅଫ୍ ନର୍ସିଂରେ ପ୍ରକାଶିତ ପ୍ରବନ୍ଧରୁ ଜଣାଯାଏ ଯେ କୌଣସି ରୋଗ ପାଇଁ ଔଷଧ ବ୍ୟବହାର ନକରି ଆରୋଗ୍ୟ ହେବା ପାଇଁ ଅନ୍ୟଜଣଙ୍କର ହସ୍ତ ସ୍ପର୍ଶରେ ରୋଗୀ ମାନସିକ ସ୍ତରରେ ଏକ ପ୍ରାକୃତିକ ଉଦ୍‌ବେଳନ ଅନୁଭବ କରେ, ଯାହାକି ତାର ଶାରୀରିକ ରୋଗକୁ ପ୍ରଶମିତ କରେ ।

ବୈଜ୍ଞାନିକମାନଙ୍କର ମତବାଦ ସମସ୍ତଙ୍କୁ ସଂଦେହ ଭିତରେ ଜଡ଼ାଇ ଧରୁଥିଲା ବେଳେ ଡାଃ କ୍ରିଜର ନିଜର ଗବେଷଣା ନିବନ୍ଧ "ଆମେରିକାନ୍ ଜର୍ଣ୍ଣାଲ୍ ଅଫ୍ ନର୍ସିଂ"ରେ ପ୍ରକାଶ କଲେ । ଏହି ନିବନ୍ଧରୁ ଜଣାଯାଏ କ୍ରିଜର ରୋଗୀମାନଙ୍କଠାରେ ସେବାର ନୂତନ କୌଶଳ ବ୍ୟବହାର କରିବାପୂର୍ବରୁ ପ୍ରଥମେ ନିଜ ଶରୀରରେ ତାହା ପ୍ରୟୋଗ କଲେ । ବିନା ଔଷଧରେ ଆରୋଗ୍ୟ ପାଇଁ ସ୍ପର୍ଶ ପ୍ରକ୍ରିୟା ଜଟିଳ ବୋଧ ହେଉଥିଲେ ବି ଅନ୍ୟର ହସ୍ତ ସ୍ପର୍ଶରେ ମାନସିକ ସ୍ତରରେ ସୃଷ୍ଟି ହେଉଥିବା ଉଦ୍‌ବେଳନକୁ ନିରୀକ୍ଷଣ କଲେ ଓ ମତ ଦେଲେ ଯେ "ପ୍ରଥମେ ରୋଗୀକୁ ଛୁଉଁଥିବା ଲୋକଟି ନିଜେ ସଂପୂର୍ଣ୍ଣ ସୁସ୍ଥଥିବ



ବସିଥିବା ଅବସ୍ଥାରେ ପରୀକ୍ଷା କରୁଛନ୍ତି ଡାକ୍ତର ଗ୍ରୀନ୍

ଏବଂ ରୋଗୀକୁ ଛୁଇଁଦେଲେ ରୋଗୀଟି ତା ହସ୍ତ ସ୍ପର୍ଶରେ ନିଶ୍ଚୟ ଆରୋଗ୍ୟ ଲାଭ କରିବ'' ଏଥିପାଇଁ ସୁସ୍ଥ ଲୋକଟିର ପ୍ରବଳ ଆକାଂକ୍ଷା ମନଭିତରେ ଦୃଢ଼ୀଭୂତ ହୋଇଥିବ । ଏହି ପ୍ରଣାଳୀରେ ରୋଗୀ ଅନୁଭବ କରିବ ଯେ ମତେ ଛୁଉଁଥିବା ବ୍ୟକ୍ତିବିଶେଷଙ୍କ ସ୍ପର୍ଶରେ ମୁଁ ନିଶ୍ଚୟ ଆରୋଗ୍ୟ ଲାଭ କରିବି । ଏହି ପ୍ରକ୍ରିୟାକରଣ ଯୋଗୁଁ ରୋଗୀ ତା ମନ ଭିତରେ ଗ୍ରହଣ କରିନେଇଯାଏ ଯେ ସେ ନିଶ୍ଚୟ ଆରୋଗ୍ୟତା ଲାଭକରିବ । ଗବେଷଣାର ଫଳାଫଳ ଜାଣିବା ପାଇଁ ନିଯୋଜିତ କରାଯାଇଥିବା ରୋଗୀମାନଙ୍କ ରକ୍ତକୁ ପରୀକ୍ଷା କରିବା ପରେ ଦେଖାଗଲାଯେ ସେ ସମସ୍ତଙ୍କ ରକ୍ତରେ ଲୋହିତ ରକ୍ତ କଣିକାର ଅଭିବୃଦ୍ଧି ଘଟିବା ସଙ୍ଗେ ସଙ୍ଗେ ରୋଗ ପ୍ରତିରୋଧକ ଶକ୍ତିର ଅଭିବୃଦ୍ଧି ଘଟିଛି ।

୧୯୭୧ ମସିହାରେ ଡାଃ କ୍ରିଗରଙ୍କ ଗବେଷଣା ଜନିତ ଜ୍ଞାନ ତଥା ଆରୋଗ୍ୟତା ପାଇଁ ସେବାର ନୂତନ କୌଶଳ ନର୍ସିଂ ସ୍କୁଲମାନଙ୍କରେ ନର୍ସିଂ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦିଆଗଲା ।

ବର୍ତ୍ତମାନର ଡାକ୍ତରୀ ସେବା ଆରୋଗ୍ୟତା ପାଇଁ ଉପରୋକ୍ତ ପଦ୍ଧତିକୁ ଗ୍ରହଣ କରୁନଥିଲେ ବି ବହୁଳଭାବେ ବ୍ୟବହୃତ ସ୍ପର୍ଶ ଆରୋଗ୍ୟତା ପଦ୍ଧତିକୁ ଭୁଲ ବୋଲି ପ୍ରମାଣିତ କରିପାରୁନାହିଁ ।

ଆରୋଗ୍ୟତା ପାଇଁ ଆଉ ଏକ ଯାଦୁକରୀ ଉପାୟ ରୋଗୀ ନିଜ ଶରୀରର ଆଭ୍ୟନ୍ତରୀଣ କ୍ରିୟା ଯଥା ଉଷ୍ଣତା, ରକ୍ତଚାପ, ହୃଦସ୍ପନ୍ଦନ ଏବଂ ବାହୁ ସଂଚାଳନକୁ ସଂଯମ କରି ନିଜ ରୋଗରୁ ମୁକ୍ତ ହୋଇଥାଏ । ଏହି ଶାରୀରିକ ସଂଯମତା ଏବଂ ଅଭ୍ୟାସ ବଳରେ ନିଜ ସମ୍ବେଦନଶୀଳତାକୁ ଉଜ୍ଜୀବିତ କରାଇଥାଏ । ସମ୍ବେଦନଶୀଳତା ରୋଗୀକୁ ଏପରି ଏକ ଭାବନାରାଜ୍ୟକୁ ଘେନିଯାଏ ଯେ ସେ ଆଦୌ ଅନୁଭବ କରିପାରେନି କି

ସେ ଜଣେ ରୋଗୀ କିମ୍ବା ତା ଶରୀରର କୌଣସି ଅଂଶ ରୋଗାକ୍ରାନ୍ତ । ଏକ କାଳ୍ପନିକ ରାଜ୍ୟରେ ଘୁରିବୁଲୁଥିଲାବେଳେ ରୋଗୀ ମନେକରିଥାଏ ଯେ ତା ଶରୀରରୁ ରୋଗ ବା ଅସୁସ୍ଥତା ନିଜ ଅଭ୍ୟାସ ବଳରେ ଦୂରେଇ ଯାଇଛି ।

ପ୍ରଶ୍ୱାସ ସଂଯମତାରୁ ରୋଗର ଦୂରୀକରଣ ନିମନ୍ତେ ଅଧୁନା କ୍ଲାସ ବେଶ୍ ଜଣାଶୁଣା । ଆଲ୍ସି ଗ୍ରୀନ ଓ ତାଙ୍କ ସ୍ୱାମୀ ଡା. ଏଲମର୍ ଗ୍ରୀନ ଏହି ପ୍ରଶ୍ୱାସ ସଂଯମତାରେ ରୋଗର ଦୂରୀକରଣର ଉଦ୍‌ଭାବକ ଭାବେ ମତ ଦିଅନ୍ତି ଯେ ଏହା ମଣିଷ ଶରୀରର କୌଣସି କ୍ଷତି କରିବା ପରିବର୍ତ୍ତେ ରୋଗ ଅଭିବୃଦ୍ଧିକୁ ପ୍ରଶମିତ କରେ ।

ଏ ସଂପର୍କେ ଆମେରିକାରେ ଗବେଷଣା ଅବ୍ୟାହତ ରହିଛି । ଆଟଲାଣ୍ଟାର ଇମୋରୀ ବିଶ୍ୱବିଦ୍ୟାଳୟ ତରଫରୁ ଅଚଳ ବାହୁକୁ ସୁସ୍ଥ କରାଯାଇଛି । ବରମିଂହାମର Behavioral Psychiatry and Psychology କେନ୍ଦ୍ରରେ ଅଧାକପାଳିବିନ୍ଧାକୁ ଉପରୋକ୍ତ ଉପାୟରେ ଆରୋଗ୍ୟ କରାଯିବା ସହ ନ୍ୟୁୟର୍କରେ କଲମ୍ବିଆ ସହରରେ ପ୍ରେସବାଇଟେରିଆନ୍ ମେଡ଼ିକାଲ ସେଣ୍ଟରରେ ଡା. କେନିଥ୍, ଗ୍ରିନ୍ସପାନ ନାମକ ମନସ୍ତାତ୍ତ୍ୱିକ ରୋଗୀକୁ ପ୍ରଶ୍ୱାସ ସଂଯମ ଉପାୟରେ ଆରୋଗ୍ୟ କରିଛନ୍ତି ଓ ଜଣେ ହୃଦଯନ୍ତ୍ରଣା ଜର୍ଜରିତ ରୋଗୀକୁ ଅସ୍ତ୍ରୋପଚାର ନକରାଇ ଆରୋଗ୍ୟ କରିଛନ୍ତି । ତିନିମାସ ମଧ୍ୟରେ ପ୍ରଶ୍ୱାସ ସଂଯମତା ଉପାୟରେ ବାଇଶଜଣ ରୋଗୀଙ୍କୁ ଆରୋଗ୍ୟ କରାଇ ନିଜକୁ ଗୌରବ ମଣ୍ଡିତ କରିଛନ୍ତି ।

ଭାରତୀୟ ଯୋଗୀ-ଋଷିମାନଙ୍କ ପରି, ରୋଗୀ ନିଜର ନିଃଶ୍ୱାସ ପ୍ରଶ୍ୱାସକୁ ଅଭ୍ୟାସ ବଳରେ ସଂଯମ କରି ଆରୋଗ୍ୟ ଲାଭ କରିଥାଏ । ଏହି ପ୍ରକ୍ରିୟାରେ ଅଧିକ ସଫଳତା ହାସଲ କରିବା ପାଇଁ ଗବେଷଣା ଚାଲୁରହିଛି ।

ଆରୋଗ୍ୟତା କ୍ଷେତ୍ରରେ ଉପରୋକ୍ତ ଉପାୟଗୁଡ଼ିକରୁ ପର୍ଯ୍ୟାପ୍ତ ସୁଫଳ ମିଳିଥିଲେ ହେଁ ଉପାୟ ଗୁଡ଼ିକର ପ୍ରୟୋଗ ତଥା ବହୁଳ ବ୍ୟବହାର ସଂପର୍କେ ଅନେକ ପ୍ରଶ୍ନ ଏବେ ବି ଅମୀମାଂସିତ । ବ୍ୟାୟାମ ଦ୍ୱାରା କିମିତି, କଣ ଓ କାହିଁକି, ଜଣଙ୍କର ସ୍ପର୍ଶରେ ରୋଗୀ ଶରୀରରେ କି ପରିବର୍ତ୍ତନ, କାହିଁକି ଓ କିମିତି ପରିବର୍ତ୍ତନ ଘଟି ସେ ବିନା ଔଷଧରେ ଆରୋଗ୍ୟତା ହାସଲ କରିପାରୁଛି ଜଣାପଡ଼ିଲେ ସମାଜର ବହୁ କଲ୍ୟାଣ ସାଧିତ ହୁଅନ୍ତା ।



# ପୃଥିବୀର ପ୍ରଥମ ସହର

*ଉର୍, ରୁକ୍, ଲାଗାସ, ଇନ୍ଦୁ.... କେଉଁଟା ତେବେ ପୃଥିବୀର ପ୍ରଥମ ସହର ? ସତରେ କ'ଣ ପୃଥିବୀର ସର୍ବ ପ୍ରଥମ ସହରି ସଭ୍ୟତାର ଅଗ୍ରମାରମ୍ଭ କରିଥିଲେ ସୁମେରୀୟମାନେ.... ନା ଆଉ କିଏ ? କେଜାଣି ! ଏବେ ତାହା ଚିର ରହସ୍ୟ ଘେରରେ । ବିଜ୍ଞାନ ଓ ଇତିହାସର ସିଦ୍ଧାନ୍ତ ବାହାରେ ।*

କିଛି ବର୍ଷ ପୂର୍ବେ ଐତିହାସିକମାନଙ୍କ ମନରେ ବିଶ୍ୱାସଥିଲା ଯେ– ଟାଇଗ୍ରିସ୍ ଓ ଇୟୁଫ୍ରେଟିସ୍ ନଦୀର ତ୍ରିକୋଣଭୂମିରେ ୫୦୦୦ ବର୍ଷ ପୂର୍ବେ ସୁମେରିଆନମାନେ ପୃଥିବୀର ପ୍ରଥମ ସହର ନିର୍ମାଣ କରିଥିଲେ । ଉର୍, ରୁକ୍, ଇନ୍ଦୁ, ଲାଗାସା ଓ ନିପୁର ପ୍ରମୁଖ ବିତଶାଳି ସହରଗୁଡ଼ିକରେ ସୁମେରିଆନ୍‌ମାନଙ୍କ ଦ୍ୱାରା ସହରି ସଭ୍ୟତାର ଅଗ୍ରମାରମ୍ଭ ଘଟିଥିଲା, କିନ୍ତୁ ଏହି ସହରି ସଭ୍ୟତାର ଅନେକ ପୂର୍ବରୁ, ସହରି ସଭ୍ୟତାର ସୃଷ୍ଟି ସଂପର୍କେ ଯଥେଷ୍ଟ ଐତିହାସିକ ପ୍ରମାଣ ମିଳିବା ଆଜି ସମସ୍ତଙ୍କୁ ବିସ୍ମିତ କରିଛି ।

ହସ୍ତଗତ ହୋଇଥିବା ଐତିହାସିକ ତଥ୍ୟାବଳୀରୁ ଜଣାଯାଏ ଯେ ସୁମେରୀୟମାନଙ୍କ ସହରି ସଭ୍ୟତାର ଯଥେଷ୍ଟ ପୂର୍ବରୁ କ୍ୟାଟେଲ୍ ହୁକ୍, ଜେରିକୋ ଓ ଲେପେନସ୍କି ଭିର୍ ସହରରୁ ହିଁ ପୃଥିବୀରେ ସହରି ସଭ୍ୟତା ସୃଷ୍ଟି ହୋଇଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧପରେ କେତେକ ଐତିହାସିକ, ପୃଥିବୀର ସହରି ସଭ୍ୟତାର ଆରମ୍ଭ କେଉଁଠାରୁ ଓ କେବେ ସୃଷ୍ଟି ସେ ସଂପର୍କେ ଅନୁସଂଧାନ ଆରମ୍ଭ କଲେ । ସେମାନଙ୍କ ସଫଳ ଅନୁସଂଧାନ ଓ ଗବେଷଣାରୁ ଅନେକ ତଥ୍ୟ ମିଳିଲା । ଅଂଗାରରେ ଲିଖିତ ତାରିଖ ପ୍ରଣାଳୀ ଗବେଷକଙ୍କୁ ପୁରୁଣା ସ୍ଥାନଗୁଡ଼ିକ ଅନୁସଂଧାନ ପାଇଁ ନିୟୋଜିତ କଲା ଓ ସେମାନେ ଆବିଷ୍କାର କଲେ ଯେ ୩୦,୦୦୦ ବର୍ଷ ଧରି ମଣିଷମାନେ ଏ ପୃଥିବୀରେ ବସବାସ କରିଆସୁଛନ୍ତି । ଏହି ତଥ୍ୟ ପ୍ରମାଣିତ କଲା ଯେ ଯଦି ୩୦,୦୦୦ ବର୍ଷ ଧରି ମଣିଷ ସଭ୍ୟତା ଏ ପୃଥିବୀରେ ବସବାସ କରିଆସୁଛନ୍ତି ତେବେ ସହରି ସଭ୍ୟତା ମାତ୍ର ୫,୦୦୦ ବର୍ଷତଳୁ ଆରମ୍ଭ ହେଲା କିମିତିଯେ ! ଏହି ତଥ୍ୟ ଅନୁଯାୟୀ ଗବେଷକମାନେ ପୃଥିବୀର ବିଭିନ୍ନ ଅଂଚଳ ଘୂରିବୁଲିଲେ । ସେମାନଙ୍କ ନଜରକୁ ଆସିଥିବା ତିନୋଟି ସହର ସୁମେରିଆନ୍‌ମାନଙ୍କ ଦ୍ୱାରା ନିର୍ମିତ ସହରଠାରୁ ଯଥେଷ୍ଟ

ପୁରୁଣା ହେଲେହେଁ ଜେରିକୋ, କ୍ୟାଟାଲ ହୁକ୍ ଓ ଲେପେନସ୍କି ଭିର୍‌ଠାରୁ ପୁରୁଣା କି ନୁହେଁ ଜାଣିବା ପାଇଁ ଅନୁସଂଧାନ ଚଳାଇ ରଖିଛନ୍ତି ।

ବାଇବେଲ୍‌ରେ ଜେରିକୋକୁ ତାଳଗଛର ସହରଭାବେ ବର୍ଣ୍ଣନା କରାଯାଇଛି । ଗବେଷକମାନଙ୍କ ମତାମତ ଅନୁଯାୟୀ ସୁମେରିଆନମାନଙ୍କ ଆର୍ବିଭାବର ପ୍ରାୟ ୪,୦୦୦ରୁ ୯,୦୦୦ ବର୍ଷ ପୂର୍ବରୁ ଜେରିକୋ ସହର ଜନ୍ମ ନେଇଛି । ଜୋଷୁଆ ପୁସ୍ତକରୁ ଜେରିକୋ ସଂପର୍କେ ଜଣାଯାଏ ଯେ, ଡୋର୍ଡାର୍ନ ଅତିକ୍ରମ କରିବା ପୂର୍ବରୁ ମୋଜେଷ ଇହଲୀଳା ସମ୍ବରଣ କଲେ । ତାଙ୍କ ପୁଅ ଜୋସୁଆ, ଇସ୍ରାଏଲ୍ ସୈନ୍ୟମାନଙ୍କୁ ଧରି ଦୁର୍ଗମ ସରୁପଥ ଓ ନଦୀ ଅତିକ୍ରମ କରି ଜେରିକୋ ଆକ୍ରମଣ କଲେ । ଯୁଦ୍ଧର ବିଭୀଷୀକାରେ ସହରରେ ଅନେକ ଧନ, ଜୀବନ କ୍ଷୟ ଘଟିବା ପରେ ଏହା ଇସ୍ରାଏଲ ସୈନ୍ୟମାନଙ୍କ ଦ୍ୱାରା ଅଧିକୃତ ହେଲା ।

ଭୂତତ୍ତ୍ୱବିତ୍ ଓ ପ୍ରତ୍ନତତ୍ତ୍ୱବିଦ୍ ବାଇବେଲ ପ୍ରଭୃତି ପୌରାଣିକ ତଥ୍ୟ ସଂବଳିତ ପୁସ୍ତକରେ ବର୍ଣ୍ଣିତ ତଥ୍ୟାବଳୀକୁ ମୂଳଦୁଆ କରି ନିଜର ଗବେଷଣା ଅବ୍ୟାହତ ରଖିଲେ । ଶହେବର୍ଷ ଧରି ବିଭିନ୍ନ ସ୍ଥାନ ଖୋଳି କୌଣସି ନିର୍ଭରଶୀଳ ତଥ୍ୟ ଆବିଷ୍କାର କରିପାରିନଥିଲେ ବି ୧୯୫୨ରୁ ୧୯୫୮ ମସିହା ମଧ୍ୟରେ ବ୍ରିଟିଶ ପ୍ରତ୍ନତତ୍ତ୍ୱବିଦ୍ ଡାଃ କାଇଥଲିନ୍ କେନଜିନ କେତେକ ଭଗ୍ନ କାନ୍ଥ ଆବିଷ୍କାର କଲେ । କାର୍ବନ-୧୪ ଡେଟିଙ୍ଗ୍ ପଦ୍ଧତି ଅନୁଯାୟୀ ଗବେଷକମାନେ ଉକ୍ତ କାନ୍ଥର ଭଗ୍ନ ଇଟା ଓ ଖୋଳପାରୁ ନିର୍ମାଣ ତାରିଖ ସ୍ଥିର କଲେ । କେନ୍‌ଜନ ମତ ଦେଲେ ଯେ, ଖ୍ରୀ.ପୂ. ୭,୦୦୦ରେ ଗୃହଟି ନିର୍ମିତ ହୋଇଥିଲା । ଇତିହାସରୁ ଜଣାପଡ଼େ ଯେ, ଖ୍ରୀ.ପୂ. ୧୪୦୦ରୁ ୧୨୫୦ ମଧ୍ୟରେ ଇସ୍ରାଏଲ୍‌ରେ ଏକ ଯୁଦ୍ଧ ସଂଘଟିତ ହୋଇଥିଲା । ଏଣୁ ୫,୫୦୦ ବର୍ଷ ପୂର୍ବେ ମୋଜେସଙ୍କ ପୁଅ ଜୋସୁଆଙ୍କ ଦ୍ୱାରା ଜେରିକୋ ସହର ଧ୍ୱଂସ ହେବାର ତଥ୍ୟ ପ୍ରମାଣିତ ହେଲା ।

୧୯୬୧ ମସିହାରେ ବ୍ରିଟିଶ୍ ପ୍ରତ୍ନତତ୍ତ୍ୱବିଦ୍ ଜେମ୍‌ସ ମିର୍ଲାଟ ଆଙ୍କରା ତୁର୍କିଠାରେ ଆଉ ଏକ ସହର ଆବିଷ୍କାର କଲେ । ଏହା କ୍ୟାଟାଲ'ହୁକ୍ । ୧୯୬୫ ମସିହାରେ ଯୁଗସ୍ଲୋଭିଆର ଦାନୁବି ନଦୀର ଡାହାଣପଟ ବଂଧରୁ ଲିପେନସ୍କି ଭିର୍ ସହର ଆବିଷ୍କୃତ ହେଲା ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ନୂତନ ପ୍ରସ୍ତର ଯୁଗ ସଭ୍ୟତାରେ ସହର ଗୁଡ଼ିକର ନିର୍ମାଣର ସମୟ ଧାର୍ଯ୍ୟ କରି କ୍ରମାନ୍ୱୟରେ ପ୍ରକାଶ କରିନଥିଲେ ହେଁ କ୍ୟାଟାଲ୍ ହୁକୁକ୍ ସହରର ଭଗ୍ନାବଶେଷରୁ ହସ୍ତଗତ ହୋଇଥିବା ପ୍ରତ୍ନତାତ୍ତ୍ୱିକ ପ୍ରମାଣରୁ ଜଣାଯାଏ ଯେ ଏହା ଖ୍ରୀ.ପୂ. ୬୨୫୦ ରୁ ଖ୍ରୀ.ପୂ. ୫୪୦୦ ମଧ୍ୟରେ ନିର୍ମିତ ହୋଇଥିଲା । ଜେରିକୋ ସହର ପରି

କ୍ୟାଟାଲ ହୁଜୁକ୍ ସହର ପ୍ରତ୍ନତାତ୍ତ୍ୱିକ ତଥ୍ୟ ଯୋଗାଇଲା । ଉକ୍ତ ସହରର ଅଧିବାସୀମାନେ ଖୁବ୍ ସମୃଦ୍ଧ ଥିଲେ । ସେମାନଙ୍କ ଜୀବନ ପ୍ରଣାଳୀ ସହଜ ଓ ରୁଚିପୂର୍ଣ୍ଣ ଥିବାର ଜଣାଗଲା ।

ଲିପେନସ୍କି ଭିର୍ ସହରରୁ ମିଳିଥିବା ବିଭିନ୍ନ ପ୍ରସ୍ତରଖଣ୍ଡକୁ ବିଶ୍ଳେଷଣ କରିବାରୁ ଜଣାଗଲା ଯେ ଏହାର ଅଧିବାସୀମାନେ ପୁରାତନ ପ୍ରସ୍ତର ଯୁଗର ମଣିଷ ଥିଲେ । ସହରି ସଭ୍ୟତା ଭିତରେ ଜୀବନଯାପନ କରୁଥିଲେ ବି ଘରଠାରୁ ଅନେକ ଦୂରକୁ ଯାଇ କୁଡ଼ିଆରେ ରହୁଥିଲେ । ଯାଯାବରଙ୍କ ପରି ଏକ ସ୍ଥାନରୁ ଅନ୍ୟସ୍ଥାନକୁ କିଛିଦିନ ପାଇଁ ଘୁରିବୁଲି ନିଜ ଘରକୁ ଫେରି ଆସୁଥିଲେ । ଶୀକାର କରିବା ସେମାନଙ୍କର ସଉକ ଥିଲା ।

ମୃତ ସାଗରର ଦକ୍ଷିଣ ପାର୍ଶ୍ୱରେ ଥିବା ଉପତ୍ୟକାରେ ଅବସ୍ଥିତ ଉପରୋକ୍ତ ତିନୋଟି ସହର ମଧ୍ୟରୁ ଜେରିକୋ ସହରଟି ସର୍ବପ୍ରାଚୀନ ଅଟେ । କିନ୍ତୁ କ୍ୟାଟାଲ ହୁଜୁକ୍ କରସମ୍ବାକ ନଦୀର ଉର୍ବର ଉପତ୍ୟକାରେ ଅବସ୍ଥିତ ଏବଂ ଲିପେନସ୍କି ଭିର୍ ଦାନୁବି ନିକଟରେ ଥିବା କ୍ଷୁଦ୍ର ଉପତ୍ୟକାରେ ଅବସ୍ଥିତ ।

ସହର ଗୁଡ଼ିକ ଆୟତନରେ ବଡ଼ ନଥିଲେ ହେଁ ପାଣିର ବ୍ୟବସ୍ଥା ସବୁଠାରେ ସମାନ ନଥିଲା । ଲିପେନ୍‌ସ୍କି ଭିର୍ ସହରର ଲମ୍ବ ୧୮୫ ମିଟର ଓ ପ୍ରସ୍ଥ ୫୫ ମିଟର ଥିଲା ଓ ଏଥିରେ ମାତ୍ର ୨୦୦ରୁ ୩୦୦ ଲୋକ ବସବାସ କରୁଥିଲେ । ୧୦ଏକର ପରିମିତ ସ୍ଥାନରେ ୪୯୨ମିଟର ଲମ୍ବ ବିଶିଷ୍ଟ ଜେରିକୋ ସହରରେ ୨୦୦୦ରୁ ୩୦୦୦ ଲୋକ ବସବାସ କରୁଥିବା ବେଳେ କ୍ୟାଟାଲ ହୁଜୁକ୍ ସହରରେ ୬,୦୦୦ରୁ ୧୦,୦୦୦ ଲୋକ ବାସ କରୁଥିଲେ । କିନ୍ତୁ ସହର ଗୁଡ଼ିକର ନିର୍ମାଣ ଶୈଳୀକୁ ଦେଖିଲେ ଜଣାଯାଏ ଯେ ଗୋଟିଏ ବୃତ୍ତର ପରିଧି ଭିତରେ ଏହା ଶହ ଶହ ଏକର ଚାଷ ଜମିକୁ ଅଧିକାର କରି ନିର୍ମିତ ହୋଇଛି ଓ ଏହି ସହର ତିନିଟିରେ ହଜାର ହଜାର ଲୋକ ବାସ କରୁଥିଲେ । କିନ୍ତୁ ପ୍ରତ୍ୟେକ ସହରର ନିକଟକୁ ଯାଇ ସହରର ଘର ତିଆରି ଶୈଳୀକୁ ଦେଖିଲେ ଜଣାପଡ଼େ ଯେ ପ୍ରତ୍ୟେକ ସହରର ଘର ତିଆରି କୌଶଳ ପ୍ରତ୍ୟେକ ଠାରୁ ଭିନ୍ନ ।

ଜେରିକୋ ସହରରେ କେତେକ ପଡ଼ୋଶୀ ଏକତ୍ର ବକ୍ରାକାର ଇଟାରେ ସେମାନଙ୍କର ବାସଗୃହ ନିର୍ମାଣ କରିଥିଲେ । ଗୋଟିଏ ଖଂଜା ପରି ସେମାନେ ଏକତ୍ର ଅର୍ଦ୍ଧ ବୃତ୍ତାକାର ଘର ନିର୍ମାଣ କରି ରହୁଥିଲେ ଓ ସେମାନଙ୍କ ମଧ୍ୟରେ ପାରିବାରିକ ସଂପର୍କ ଏତେ ନିବିଡ଼ ଥିଲା ଯେ ୨/୪ଟି ପରିବାର ପାଇଁ ପ୍ରବେଶ ପଥ ମାତ୍ର ଗୋଟିଏ ଥିଲା ।

କ୍ୟାଟାଲ ହୁଜୁକ୍ ସହରରେ ଘରଗୁଡ଼ିକ ଚାରିକଣିଆ ଇଟାରେ ତିଆରି କରାଯାଇଥିଲା । ପରିବାର ଗୁଡ଼ିକ ପାଖାପାଖି ନିର୍ମିତ ହୋଇଥିଲା । ମାତ୍ର ସମସ୍ତେ

ଛାତବାଟେ ଯିବା ଆସିବା କରୁଥିଲେ । ୨୦୦୦ ବର୍ଷ ମଧ୍ୟରେ ଏମିତି ଥଳିପରି ବ୍ୟବହୃତ ହେଉଥିବା ଘରର ନଜିର ଇତିହାସରେ ନାହିଁ । ପ୍ରତ୍ୟେକ ପରିବାର ପାଇଁ ଦୁଇଟି ଲେଖାଁଏ କୋଠରୀ ଥିଲା ଓ ମୁଖ୍ୟ ଘର ୨୦"× ୧୩" ଆୟତନରେ ନିର୍ମିତ ହୋଇଥିଲା ।

ଲିପେନ୍‌ସ୍କି ଭିର୍ ସହରର ନିର୍ମାଣ ଶୈଳୀ ସଂପୂର୍ଣ୍ଣ ଭିନ୍ନ । ଶିବିର ପରି ଦେଖାଯାଉଥିବା ଏହି ଘର ଗୁଡ଼ିକ ପ୍ରତ୍ୟେକ ପ୍ରତ୍ୟେକଙ୍କ ଠାରୁ ଯଥେଷ୍ଟ ବ୍ୟବଧାନରେ ନିର୍ମିତ ହୋଇଥିଲା । କ୍ୟାଟାଲ ହୁଜୁକ୍ ଓ ଜେରିକୋ ସହରରେ ଅନେକ କୋଠା ସାଧାରଣ ଲୋକଙ୍କ ବ୍ୟବହାର ନିମନ୍ତେ ଉଦ୍ଦିଷ୍ଟ ହୋଇଥିଲା କିନ୍ତୁ ଲିପେନ୍‌ସ୍କି ସହରରେ ଚାରୋଟି କୋଠା ମନ୍ଦିର ଭାବେ ବ୍ୟବହୃତ ହେଉଥିବା ପରି ମନେ ହେଉଥିଲା । ଖନନକାରୀମାନେ ମତ ଦିଅନ୍ତି ଯେ କ୍ୟାଟାଲ୍ ହୁଜୁକ୍ ସହରର ଲୋକମାନେ ସମାଜରେ ମହିଳାମାନଙ୍କୁ ପ୍ରାଧାନ୍ୟ ଦେଉଥିଲେ ଓ ସମସ୍ତେ ଠାକୁରାଣୀଙ୍କୁ ପୂଜା ଅର୍ଚ୍ଚନା କରୁଥିଲେ । ଏହି ସହରର ଅଧିବାସୀମାନେ ମେଲେରିଆ, ନିମୁନିଆ ଆଦି ରୋଗରେ ଆକ୍ରାନ୍ତ ହେଉଥିଲେ । ଲିପେନ୍‌ସ୍କି ଭିର୍‌ର ଲୋକମାନେ ପୁରାତନ ପ୍ରଥାକୁ ଗୁରୁତ୍ୱ ଦେଉଥିଲେ ଏବଂ ସମସ୍ତେ ମିଳିମିଶି ନିର୍ଭର ଜୀବିକା ନିର୍ବାହ କରୁଥିଲେ । କିନ୍ତୁ କାଟାଲ୍ ହୁଜୁକ୍ ସହରରେ ଲୋକମାନଙ୍କ ସାମାଜିକ ଚଳଣି ପୃଥକ ଥିଲା । ପ୍ରତ୍ୟକଙ୍କର ଚଳିବା ଶୈଳୀ ଅନ୍ୟଠାରୁ ଭିନ୍ନ ଥିଲା । ସେମାନଙ୍କ ଗୃହ ନିର୍ମାଣ ଶୈଳୀରୁ ଏହା ସ୍ପଷ୍ଟ ଯେ ପ୍ରତ୍ୟକଙ୍କର ପ୍ରତ୍ୟକଙ୍କ ସହ ସଂପର୍କ ଭଲ ନଥିଲା ତଥାପି ସେମାନେ ବୈଜ୍ଞାନିକ ଯୁଗର ମଣିଷଙ୍କ ପରି ସୀସା ଓ ତମ୍ବାର ବ୍ୟବହାର ଜାଣିଥିଲେ ।

ଉପରୋକ୍ତ ଗବେଷଣାମାନଙ୍କରୁ ଜଣାଯାଏ ଯେ ସହରି ସଭ୍ୟତାର ସୃଷ୍ଟି ସଂବନ୍ଧେ ଏଅବଧି ପ୍ରକୃତ ତଥ୍ୟ ମିଳିନାହିଁ । ଗବେଷଣା ଓ ପ୍ରତ୍ନତାତ୍ତ୍ୱିକ ଅନୁସଂଧାନ କ୍ରମେ ଇତିହାସର ପୃଷ୍ଠା ବଦଳିବ । ସୁମେରିଆନ୍‌ମାନଙ୍କ ଦ୍ୱାରା ନିର୍ମିତ ସହରର ଆୟୁଷ ଓ ପୃଥିବୀର ସର୍ବପ୍ରାଚୀନ ସହରର ନାମ ସ୍ଥିରୀକୃତ ହେବ ।



# ଭୂପୃଷ୍ଠ ସଂକୁଚିତ ହେଉଛି କି ?

*ହିମାଳୟ ଏବେ ମଣିଷ ପରି ବଢ଼ି ଚାଲିଛି ! ବଢ଼ି ଚାଲିଛି ଆଣ୍ଡସ ଓ ପାମିର୍ ଆଦି ପ୍ରତ୍ୟେକ ଗିରିଶୃଙ୍ଗ । ସମୁଦ୍ରର ବିଶାଳ ଛାତି ପୁଣି ଫୁଲି ଉଠୁଚି !*

*କାହିଁକି....... କାହିଁକି ନିର୍ଜିବ ବସ୍ତୁର ଘଟୁଚି ଶରୀର ବିକାଶ ? ମହାକାଳର ହାତ ମୁଠାରେ, ମୁଠାର କୋଉ ସନ୍ଧିରେ ସତରେ ଛପିଚି ଏଇ ରହସ୍ୟର ସୂକ୍ଷ୍ମ ଯାଦୁକାରୀ ଖିଅ....*

· ବେଳେ ବେଳେ ସଂବାଦପତ୍ରରେ ଦେଖିବାକୁ ମିଳେଯେ ବୈଜ୍ଞାନିକମାନେ ଗବେଷଣା କରି ଜଣାଇଛନ୍ତି "ହିମାଳୟ ଆଣ୍ଡସ ଓ ପାମିର ପ୍ରଭୃତି ପର୍ବତଶୃଙ୍ଗ ବୃଦ୍ଧି ପାଉଛି କିମ୍ବା ସମୁଦ୍ର ବକ୍ଷ ବୃଦ୍ଧି ପାଉଛି । ମାତ୍ର ଏହା ଏତେ ମନ୍ଥର ଗତିରେ ଘଟୁଛି ଯେ ଅନେକ ବର୍ଷ ଅତିକ୍ରମ କଲାପରେ ଜନମାନସ ଏହାକୁ ଅନୁଭବ କରିବ ।" ସମୁଦ୍ର ବକ୍ଷ ସ୍ଥଳର ଅଭିବୃଦ୍ଧି ମଣିଷକୁ ଯେତିକି ସଂଦେହକୁ ଟାଣି ନ ନିଏ ନିର୍ଜୀବ ପାହାଡ଼ର ଅଭିବୃଦ୍ଧି ସେତିକି ବିସ୍ମିତ କରେ ।

ଗତାନୁଗତିକ ଧାରାରେ ପୃଥିବୀ ନିଜର କକ୍ଷ ପଥରେ ଘୁରୁଥିବାବେଳେ ନିଜ ଅକ୍ଷ ଚାରିପଟେ ଘୁରିବୁଲେ । ମହାକର୍ଷଣ ଶକ୍ତିର ସଂଘର୍ଷରୁ ସୃଷ୍ଟି ପୃଥିବୀର ଉପରିଭାଗ କଠିନ ହେଲେ ହେଁ ଏହାର ଆଭ୍ୟନ୍ତରୀଣ ଅଂଶ ପୂର୍ବପରି ଉତପ୍ତ ଓ ନମନୀୟ ଅବସ୍ଥାରେ ରହିଛି । ପୃଥିବୀର ଆହ୍ନିକ ଗତି ବା ଆବର୍ତ୍ତନ ଏବଂ ପରିକ୍ରମଣ ଫଳରେ ସଂଗଠିତ ହେଉଥିବା ପ୍ରତିକ୍ରିୟା ସାଧାରଣରେ ଅନୁଭୂତ ହୁଏନାହିଁ ।

ପୃଥିବୀ ମାନଚିତ୍ରକୁ ନିରୀକ୍ଷଣ କଲେ ଦେଖାଯାଏ ଯେ ଅନେକ ଦ୍ୱୀପର ଭୌଗଳିକ ଆକାର ଗୋଲ ନୁହେଁ । ଅତୀତରେ ଭୌଗଳିକବିତ୍‌ମାନେ ମନେକରୁଥିଲେ ଯେ ପ୍ରଥମାବସ୍ଥାରେ ଦ୍ୱୀପଗୁଡ଼ିକର ଆକାର ଗୋଲ ଥିଲା । ଏହି ମତବାଦକୁ ପ୍ରମାଣିତ କରିବା ପାଇଁ ଭୌଗଳିକ ବିଶାରଦମାନେ ଯଥେଷ୍ଟ ପ୍ରମାଣ ଯୋଗାଇଦେଇ ପାରିନଥିଲେ ହେଁ ୧୯୧୫ ମସିହାରେ ଜର୍ମାନର ପଦାର୍ଥବିଜ୍ଞାନୀ ଆଲଫ୍ରେଡ୍ ୱାଙ୍ଗର ପୃଥିବୀର ଏକ କାଳ୍ପନିକ ମାନଚିତ୍ର ପ୍ରଦର୍ଶିତ କରି କହିଥିଲେ ଯେ ସମଗ୍ର ପୃଥିବୀର ସ୍ଥଳଭାଗ ବର୍ତ୍ତମାନ ପରି ଅଲଗା ଅଲଗା ନଥାଇ ଗୋଟିଏ ସ୍ଥାନରେ ଅବସ୍ଥିତ ଥିଲା ଓ ଏହାର ଚତୁଃପାର୍ଶ୍ୱକୁ ସମୁଦ୍ର ଘେରିଥିଲା । ଭୂପୃଷ୍ଠର ସଂଚାଳନ ଫଳରେ କ୍ରମଶଃ ଏହା ଖଣ୍ଡ ବିଖଣ୍ଡିତ ହୋଇ ବର୍ତ୍ତମାନର ପୃଥିବୀ ମାନଚିତ୍ର ପରି ପରସ୍ପର ଠାରୁ ଦୂରେଇ ଯାଇଛି । ତାଙ୍କ ମାନଚିତ୍ରକୁ କେହି ଗ୍ରହଣ କରିନଥିଲେ ହେଁ ୱାଙ୍ଗରଙ୍କ ଦ୍ୱାରା ପ୍ରସ୍ତୁତ

ମାନଚିତ୍ରକୁ ଭିତ୍ତି କରି କଣ୍ଟିନେଣ୍ଟାଲ ଡ୍ରିଫ୍ଟଥିଓରୀ ଜନ୍ମ ନେଲା । ପୃଥିବୀର ଘୂର୍ଣ୍ଣୟନ ଓ ଭୂପୃଷ୍ଠର ସଂଚାଳନ ସଂପର୍କେ ୱାଗ୍ନାରଙ୍କର ମାନଚିତ୍ର ତଥା ଗବେଷଣାତ୍ମକ ନିବନ୍ଧ ବୈଜ୍ଞାନିକ ଓ ଭୌଗଳିକବିତ୍‌ମାନଙ୍କୁ ଏ ଅବଧି ଏତେ ଆୟୁଧ ଯୋଗାଇ ଚାଲିଛି ଯେ ଚନ୍ଦ୍ରପୃଷ୍ଠରୁ କୌଣସି ସ୍ଥାନକୁ ୱାଗ୍ନରଙ୍କ ମରଣତ୍ତୋର ସ୍ମୃତି ଉଦ୍ଦେଶ୍ୟରେ ନାମିତ କରିବାର ନିଷ୍ପତ୍ତି ଗ୍ରହଣ କରାଯାଇଛି ।

୧୯୬୦ ମସିହାରେ ଉଦ୍ଭିଦବିଜ୍ଞାନୀମାନେ ୱାଗ୍ନରଙ୍କ ମତବାଦକୁ ସମ୍ମାନ କଲେ । ୱାଗ୍ନରଙ୍କ ଦ୍ୱାରା ବର୍ଣ୍ଣିତ ଆଦ୍ୟ ସୃଷ୍ଟିର ମାନଚିତ୍ର ପାଇଁ ଅନେକ ତଥ୍ୟ ମିଳିପାରିଛି । ଆଧୁନିକ ସ୍ଥଳବିଜ୍ଞାନ ଓ ଅନ୍ତସ୍ଥଳର ନମୁନା ଅନୁଯାୟୀ ଭୂତତ୍ତ୍ୱବିତ୍‌ମାନେ ଭୂପୃଷ୍ଠର କଠିନତା ସଂପର୍କେ ସଠିକ୍ ବିବରଣୀ ଉପସ୍ଥାପିତ କରିଛନ୍ତି ।

କିଛିବର୍ଷ ପୂର୍ବେ ବୈଜ୍ଞାନିକମାନେ ଆଣ୍ଟାଟିକା ମହାସାଗରରେ ଅନେକ ଗବେଷଣା ପରେ ପ୍ରକାଶ କଲେ ଯେ, ଅନେକ ବର୍ଷ ପୂର୍ବରୁ ଅଷ୍ଟ୍ରେଲିଆ, ଦକ୍ଷିଣ ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକା ନିଶ୍ଚୟ ଗୋଟିଏ ଭୂଖଣ୍ଡରେ ଅବସ୍ଥିତଥିଲା । ଏହି ଗବେଷଣାରୁ ଗବେଷକମାନେ ଆହୁରି ଅଧିକ ତଥ୍ୟ ପାଇଲେ । ଆମେରିକାର ବୈଜ୍ଞାନିକ ଡଃ ରୋବର୍ଟ ଓ ଡଃ ଢୋହନ ଉପରୋକ୍ତ ତଥ୍ୟକୁ ପୁନଃ ବିଶ୍ଳେଷଣ କଲେ । ଗୋଟିଏ ଦ୍ୱୀପର ପାରିପାର୍ଶ୍ୱିକ ଅବସ୍ଥିତି, ଭୂପୃଷ୍ଠର ଚଳନ, ବର୍ତ୍ତମାନର ଅବସ୍ଥିତି, ସାମୁଦ୍ରିକ ପ୍ରସ୍ତରର ବୃଦ୍ଧି ଓ ଦ୍ୱୀପଟିର ପୂର୍ବାବସ୍ଥାକୁ ଭିତ୍ତିକରି ସେମାନେ ଗବେଷଣା ଆରମ୍ଭ କଲେ ଓ ନିଜର ଗବେଷଣା ନିବନ୍ଧରେ ପ୍ରକାଶ କଲେ ଯେ ୨୨,୫୦,୦୦୦ ବର୍ଷ ପୂର୍ବେ ପୃଥିବୀର ସମସ୍ତ ସ୍ଥଳଭାଗ ଏକତ୍ର ଗୋଟିଏ ଭୂଖଣ୍ଡ ମଧ୍ୟରେ ଅବସ୍ଥିତ ଥିଲା । ପାୟଜା ନାମକ ସମୁଦ୍ର ଏହାର ଚର୍ତୁପାର୍ଶ୍ୱ ଘେରିଥିଲା । ଉକ୍ତ ସମୟରେ ଦକ୍ଷିଣ ଆମେରିକା ଓ ଆଫ୍ରିକା ଖୁବ୍ ନିକଟରେ ଅବସ୍ଥିତ ଥିବା ସଙ୍ଗେ ସଙ୍ଗେ ଆମେରିକାର ପୂର୍ବାଞ୍ଚଳ ଓ ଉତ୍ତର ଆଫ୍ରିକାର ସୀମାରେଖା ମାନଚିତ୍ରର ଗୋଟିଏ ରେଖାରେ ହିଁ ଚିହ୍ନିତ ହୋଇଥିଲା । ଦକ୍ଷିଣ ଆଫ୍ରିକା ଓ ଆର୍ଣ୍ଟାଟିକା ମଧ୍ୟ ସ୍ଥଳରେ ଭାରତ ଅବସ୍ଥିତ ଥିଲା । ଅଷ୍ଟ୍ରେଲିଆ ଆଣ୍ଟାର୍ଟିକାର ଏକ ଅଂଶ ବିଶେଷ ଥିଲା । ଗବେଷଣା ଅନୁଯାୟୀ ଭୂପୃଷ୍ଠ ୬୦° ଠାରୁ ୧୨୦° ଅକ୍ଷାଂଶ ଭିତରେ ଅବସ୍ଥିତ ଥିଲା ।

ପଚାଶ ଲକ୍ଷ ବର୍ଷ ପର୍ଯ୍ୟନ୍ତ ଭୂପୃଷ୍ଠ ଉପରୋକ୍ତ ଅବସ୍ଥିତିରେ ରହିବା ପରେ କ୍ରମଶଃ ଏଥିରେ ବିଚ୍ଛିନ୍ନତା ଆରମ୍ଭ ହେଲା । ପ୍ରଥମେ ଲାର୍ଭାସିହା ଓ ଗଣ୍ଡୱାନା ଭାବେ ଦୁଇଭାଗରେ ବିଭକ୍ତ ହେଲା । ଲାର୍ଭାସିହାରେ ଦକ୍ଷିଣ ଆମେରିକା ଏବଂ ଗଣ୍ଡୱାନାରେ ଉତ୍ତର ଆମେରିକା, ଆଫ୍ରିକା, ଭାରତ, ଅଷ୍ଟ୍ରେଲିଆ ଓ ଆଣ୍ଟର୍କଟିକା ।

୬କୋଟୀରୁ ୫୦ ଲକ୍ଷେ ବର୍ଷ ମଧ୍ୟରେ ପୃଥବୀର ଭୌଗଳିକ ସ୍ଥିତିରେ ପରିବର୍ତ୍ତନ ଘଟି ବର୍ତ୍ତମାନର ପୃଥିବୀ ମାନଚିତ୍ରରେ ପ୍ରଦର୍ଶିତ ରୂପ ଧାରଣ କରିଛି ।

ଭୌଗଳିକବିତ୍‌ମାନଙ୍କ ଅନୁଯାୟୀ ଦ୍ୱୀପଗୁଡ଼ିକ କଠିନ ସାମୁଦ୍ରିକ ଶିଳା ଉପରେ

ଅବସ୍ଥିତ । ପୃଥିବୀର ଘୂର୍ଣ୍ଣୟନ, କିମ୍ବା ଭୂପୃଷ୍ଠର ସଂକୋଚନ ଅଥବା ଅଭ୍ୟନ୍ତର ଶିଳାସ୍ତର ଚଳନ ଯୋଗୁଁ ଦ୍ୱୀପଖଣ୍ଡ ଦୋହଲିଗଲେ ଦ୍ୱୀପଟିର ଭୌଗଳିକ ଆକାର ପ୍ରକାରରେ ପରିବର୍ତ୍ତନ ଘଟେ ।

ଡଃ ଜୋହନ ଓ ଡଃ ରୋବର୍ଟ ଏହି ସତ୍ୟକୁ ବିଶ୍ୱାସ କଲେ । ଡଃ ଡେଭ ଓ ଡଃ ବାର୍ଡ଼ ଏହି ସତ୍ୟକୁ ଅଧିକ ବିଶ୍ଳେଷଣ କରି ବର୍ଣ୍ଣନା କଲେ ଯେ, ଭାରତ ଓ ଏସିଆ ଏକ ସମତଳ ପୃଷ୍ଠଦେଶରେ ଅବସ୍ଥିତ ଥିଲା । ଭୂପୃଷ୍ଠର ଚଳନ ଯୋଗୁଁ ଭାରତର ଉତ୍ତରାଂଶରେ ଥିବା ସମଦ୍ର ପରିବର୍ତ୍ତେ ହିମାଳୟ ପର୍ବତମାଳା ଜନ୍ମ ନେଲା । ଆକସ୍ମିକ ଭୂଚଳଚନ ଯୋଗୁଁ ପୃଥିବୀର ଅନେକ ସ୍ଥାନରେ ଭୌଗଳିକ ପରିସ୍ଥିତିର ପରିବର୍ତ୍ତନ ଘଟିଛି । ଭୂତ୍ୱକର ଅଭ୍ୟନ୍ତର ସଂକୋଚନ ଓ ପ୍ରସାରଣ ଯୋଗୁଁ ଭୂକମ୍ପ ସୃଷ୍ଟି ହୁଏ । ପୃଥିବୀର ଅଭ୍ୟନ୍ତର କ୍ରମେ ଶୀତଳ ହେଉଛି । ଏହି ଶୀତଳ ହେବା ଫଳରେ ଭୂତ୍ୱକ ସଂକୁଚିତ ହେଉଛି । ଫଳରେ ଅଭ୍ୟନ୍ତର ଶିଳା ସ୍ତରରେ ଅତ୍ୟଧିକ ଚାପ ପଡ଼ି ଶିଳା ସ୍ତରରେ ଯେଉଁଠି ଫାଟିଯାଏ ବା ଫାଟ ସୃଷ୍ଟି ହୁଏ ଓ ତଦ୍ୱାରା ଶିଳା ସ୍ତରର ଯେଉଁ ଚ୍ୟୁତି ଘଟେ ତାହା ଭୂପୃଷ୍ଠରେ କମ୍ପନ ସୃଷ୍ଟି କରେ । ପରୀକ୍ଷାରୁ ଜଣାଯାଇଛି ଯେ ଯେଉଁ ସ୍ଥାନରୁ ଭୂମିକମ୍ପ ଜାତ ହୁଏ ସେହି ସ୍ଥାନରୁ ବିଭିନ୍ନ ଆଡ଼କୁ ଏକ ପ୍ରକାର ତରଙ୍ଗ ବ୍ୟାପିଯାଏ । ପାଣିକୁ ଟେକାଟିଏ ଫିଙ୍ଗିଲେ, ପାଣିରେ ଯେପରି ତରଙ୍ଗ ସୃଷ୍ଟି ହୁଏ ଓ ସେହି ତରଙ୍ଗ ଚାରିଆଡ଼କୁ ବ୍ୟାପିଯାଏ, ଏହା ଠିକ୍ ସେହିପରି ଭୂପୃଷ୍ଠ ଉପରେ ପ୍ରତିକ୍ରିୟା ସୃଷ୍ଟି କରେ । ଫଳରେ କେବଳ ହିମାଳୟ ନୁହେଁ ପୃଥିବୀର ଅନେକ ପାହାଡ଼ ପର୍ବତ ଜନ୍ମ ନେଇଛି ।

କିନ୍ତୁ ଦକ୍ଷିଣ ଆମେରିକାର ମିଟ୍ ଆଣ୍ଡସ୍, ଆଣ୍ଡସ ପର୍ବତର ସୃଷ୍ଟି ସଂପର୍କେ ଭିନ୍ନ ମତ ପୋଷଣ କଲେ । ତାଙ୍କ ଗବେଷଣା ଅନୁଯାୟୀ ସାମୁଦ୍ରିକ ଆଭ୍ୟନ୍ତରୀଣ ପରିବର୍ତ୍ତନ ଯୋଗୁଁ ଭୂପୃଷ୍ଠର ପରିବର୍ତ୍ତନ ଘଟିଲା । ଫଳରେ ଆଣ୍ଡସ ପର୍ବତମାଳା ଜନ୍ମ ନେଲା । ଏହି ପରିବର୍ତ୍ତନ କେବଳ ପାହାଡ଼ ପର୍ବତକୁ ଜନ୍ମ ଦେଇନି । ସମସ୍ତ ସମୁଦ୍ର ମଧ୍ୟ ଏଥିରୁ ସୃଷ୍ଟ ।

ଭୌଗଳିକବିତ୍‌ମାନେ ଏକମତ ଯେ ଭୂପୃଷ୍ଠର ସଂଚାଳନ ଫଳରେ ପୃଥିବୀ ସ୍ଥଳଭାଗରେ ବିଭିନ୍ନ ପରିବର୍ତ୍ତନ ଘଟୁଛି । ସୂର୍ଯ୍ୟଙ୍କ ଠାରୁ ଛିଟିକି ପଡ଼ିଥିବା ଉତ୍ତପ୍ତ ତରଳ ଗ୍ୟାସୀୟ ପଦାର୍ଥ କ୍ରମଶଃ ଶୀତଳ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ଚାପ, ଜ୍ୱଳା ମୁଖର ସୃଷ୍ଟି ତଥା ଭୂକମ୍ପ ପ୍ରଭୃତି ପ୍ରାକୃତିକ ପ୍ରକ୍ରିୟା କରଣ ବ୍ୟତୀତ ପୃଥିବୀର ଆବର୍ତ୍ତନ ମଧ୍ୟରେ ସଂଗଠିତ ସଂକୋଚନ ସାଧାରଣରେ ଅନୁଭୂତ ହେଉ ନଥିଲେ ବି ଆଲଫ୍ରେଡ୍ ୱାଙ୍ଗରଙ୍କର କାଳ୍ପନିକ ମାନଚିତ୍ରକୁ ଅସ୍ୱୀକାର କରିହେବନି କିମ୍ବା ସଂପ୍ରତି ମାନଚିତ୍ରରେ ପ୍ରଦର୍ଶିତ ପୃଥିବୀର ରୂପକଳ୍ପକୁ ସବୁଦିନ ପାଇଁ ଏମିତି ଧରି ରଖି ହେବନି ।

